# ଠେଙ୍ଗୁଣୀ
# ଓ
# ଅନ୍ୟାନ୍ୟ ପ୍ରସଙ୍ଗ

ଅଧ୍ୟାପକ ଅରବିନ୍ଦ ପଟ୍ଟନାୟକ

ପ୍ରଥମ ପ୍ରକାଶ
୧୯୭୧-୩



ପ୍ରକାଶିକା
ଝତ୍ରି ପଟ୍ଟନାୟକ
ନୟାଗଡ଼, ପୁରୀ ।



ମୁଦ୍ରାକର
ବିଶ୍ୱନାଥ ମିଶ୍ର
ରଘୁନାଥ ପ୍ରେସ
ନୟାଗଡ଼, ପୁରୀ ।



ମୂଲ୍ୟ
ପଚିଶ ପଇସା ।

ପ୍ରକାଶ ପ୍ରତୀକ୍ଷାରେ
ଏହି ଲେଖକଙ୍କର ଅନ୍ୟାନ୍ୟ ଗ୍ରନ୍ଥ—
● ଉପେନ୍ଦ୍ରଭଞ୍ଜ : ଜୀବନୀ ଓ କାବ୍ୟାନୁଶୀଳନ
● ସାଉଥିର ସଙ୍ଗୀତ ଓ ଅନ୍ୟାନ୍ୟ କବିତା ।

ମୋର ପୂଜ୍ୟ ପିତା ସ୍ୱର୍ଗତ ଭଗବାନ ପଟ୍ଟନାୟକଙ୍କ ପବିତ୍ର
ସ୍ମୃତିରେ ଅନ୍ତରର ସଶ୍ରଦ୍ଧ ଅର୍ପିତ ହେଲା ।

—ଲେଖକ

# ପହିଲା କଥା—

ମୁଁ ପୁଣି କେତେ କନ୍ତାରେ ଗଣ୍ଡାଏ କଥା ମଣ୍ଡିଷଙ୍ଗାଏ ଯେ ନିଜ ବହି ଉପରେ ଆପେ ଭୂମିକା ଲେଖି ପକାଉଛି ! ଭୁଞ୍ଜେଇଙ୍କ ଲୋକନିନ୍ଦା ହେବା କଥା । ତେବେ ଗୋଟିଏ ଉକ୍ତିକୁ ମୋର ଡର; ମୁଁ ଏକ କୁମ୍ପା ମୁହାଁ ଲୋକବୋଲି ବନ୍ଧୁ ମହଲରେ ବଦନାମ । ଅବଶ୍ୟ ଏବେ ଆପଣ ଟୋକାଏ କୁମ୍ପା ଦେଖି ନଥିବେ, ଆମ ଗୋସେଇଁଙ୍କ ଅମଳରେ ସେମାନ ଚଳୁଥିଲା । ଯେଣୁ ଆମେ ଆକବରଙ୍କ ଭଲଆ କଲି—ମୁର୍ସିଦ୍ କୁଲି ଖାଁ ଭଳି ଜଣ ଦେଖିଲୁଣି, ତେଣୁ ଗୋସେଇଁଙ୍କ କୁମ୍ପା ଆମ ପାକଟିରେ ହଜେ ନପଡ଼ିବ ଏମନ୍ତ ନୁହେଁ । ମୁଁ ମୋ ମୁହଁ କଥା କହୁ କହୁ କୁମ୍ପାରେ ପଶିଯାଉଛି । କଥାଟା କ'ଣ କି, ଜାଣିଲା ଲୋକ କହୁଛନ୍ତି ଗେଁ ଗେଁ ହୋଇ ମୁଣ୍ଡ କୁଣ୍ଡାଇଲା ଭଳି ହପଦ ଭୂମିକା ବା ଅଗ୍ରକଥମା ନଲେଖିଲେ ନମସ୍କାର ନକରି କଥାଭାଷା ହେଲା ଭଳିଆ ହେବ । ମୋର ବି ସେଥିକି ଡର । କାଳେ ପୁଣି ଏକ ବଂଶୋଷଣ ମୋ ନାଁ ଆଗରେ ନାଟଉକାକନ ବସିପଡ଼ିବ—ସିନେମା ଦେଖିଲାବେଳେ ଗୋଟାଏ କତଙ୍ଗାଲୋକ ଆଗରେ ବସି ପଡ଼ିଲା ପରି । ଡର ଉଠିବା ଗୀତନର ତିନି ପା' ଗଲା— ଆଜି କାହିଁକି ?···ରଜା ମହାରଜାଙ୍କ ଦୁଆରେ ଆଗେ ସବୁ ଦୁଆରୀ ବସୁଥିଲେ । ସସ୍ମ୍ଭ୍ରମରେ ଏମାନଙ୍କୁ ଦୌବାରିକ ବୋଲନ୍ତି । ନାଟ ତାମସା ବା ଯାତ୍ରା ପ୍ରହସନରେ ବି ଆପଣମାନେ ଦୁଆରୀ ଦେଖିଥିବେ । ଆମ ବହିର ଦୁଆର ମୁହଁରେ ଏଇ ଅଗ୍ରକଥନକୁ ଆପଣମାନେ ସେଇ ଦୁଆରୀର କଥାଭାଷା ବୋଲି

ବିବ୍ରତ କରନ୍ତି କି ? ଯାହା କରନ୍ତୁ—ସେସବୁ ଆପଣଙ୍କ ଉପରେ ଛାଡ଼ି ଦିଆଗଲା ।

ଆମର କହିବାକୁ କଥାଏ ଅଛି—ଏ ବହିର ଲେଖାଗୁଡ଼ିକ ଭିତରୁ 'ଅଭିଳାଷି ବିଲୁଇ', 'ଠେଙ୍ଗୁଣୀ', 'ଭଣ୍ଡାର ହାତରେ ପଡ଼ିଛି ଚୂଡ଼ି' ଗୁଡ଼ିକ ଝଙ୍କାର ଓ ପ୍ରଜାତନ୍ତ୍ରରେ ବାହାରି ପଡ଼ିଛି ବିଭିନ୍ନ ସମୟରେ । ସେମାନଙ୍କର ସଂପାଦକ ବିଶେଷକରି ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ ଏବଂ ଶ୍ରୀଯୁକ୍ତ ରାମପ୍ରସାଦ ସିଂହଙ୍କୁ ମୋର ବହୁତ ବହୁତ··· ···। ମୁଁ ଯେମିତି ଲୋକଟିଏ ଏଭଳି ସୁଯୋଗ୍ୟ ସଂପାଦକ ଓ ନମସ୍ୟ ଗୁରୁପ୍ରତିମ ସାହିତ୍ୟିକ ଦୁହେଁ ନକହିଥିଲେ ମୁଁ ବା କାହିଁକି କେଉଁଥିକି ଲେଖିଥାନ୍ତି ! ଲେଖି ଲେଖି ତ ସେହି କିସମର ଲେଖା ଆଉ କୋଡ଼ିଏ ଉଭୁରିଗଲା । ଓଲେଖିଗଲେ ହୁଅନ୍ତା ନାହିଁ କି । କିନ୍ତୁ ଏତେ ଲେଖୁଛି କିଏ ? ତାକୁ ଛାପିବ ବା କିଏ ?

ଏଇ କେତୋଟି ମୁଦ୍ରିତ ଅମୁଦ୍ରିତ ଲେଖାକୁ 'ଏକାଠେଇ କରିଦେବାର' ଇଚ୍ଛା ଆଗରୁ ମୋର ନଥିଲା । କାହିଁକି ନା ଆଷାଢ଼ ମାସର ଛତୁଲା କେରାଣ୍ଡି···ମାରିବାର ସୌଭାଗ୍ୟ ମୋ ପରି ବ୍ୟକ୍ତିର ନାହିଁ । ମାତ୍ର ଆମ ହରିମାଜେଷ୍ଟି ଏମନ୍ତ କାର୍ଯ୍ୟରେ କଢ଼ାକର ଅଗ୍ରସର ହେଲେ—ଏଥିପାଇଁ ତାଙ୍କୁ ଧନ୍ୟବାଦ ଦିଅନ୍ତି ଯେ, ଲାଜ ମାଡ଼ୁଛି !

ବହିର ଛାପେଇରେ ଯଦି କେଉଁଠି ଭୁଲ ଭଟକା ହାବୁଡ଼ି ପଡ଼େ, ତେବେ—

"ଦୋଷ ଅଦୋଷ ପୁଣି ଯାଇବ
ଲେଖକଙ୍କାରର ଦୋଷ ନଧରିବ ।"



# ଠେଙ୍ଗୁଣୀ



"ଜଳକୁ କଣ୍ଟେ ଶତ୍ରୁକୁ ଆଣ୍ଟେ ସଙ୍ଗେ ହୋଇଥାଏ ଜଣେ
ହୋଇ ଥାଉ ପଛେ ଆମ୍ଭ ତମିର ତାକୁ ନ ଛାଡ଼ିବ କ୍ଷଣେ"

ବାଇଆ ହେଲ ? ବୁଦ୍ଧି ବାମ ନହେଲେ ଏକୁ ଛାଡ଼େ କଏ ? 'ଇଏତ କଣ ଛାଡ଼ିବା ଜିନିଷ ନା ଛାଡ଼େଇ ହବା ଦରବ ? କେଉଁ ଢଅଁ ଦେବତା ସ୍ଥା ଲଗି ହେବେ ନା ! ଇଏତ ଦେବତା ଠିକ !

ଦେବତା ? ତାଙ୍କଠାରୁ ଆଉର ପ୍ରିୟ – ଆହୁରି ଶ୍ରଦ୍ଧେୟ—ତାଙ୍କ ଉପରେ ମୂର୍ତ୍ତିଏ । ଯେମିତି ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରଦ୍ଧାନାମ 'ଜଗା' ପୁଣି ସେଇ ଅନୁସାରେ ପ୍ରିୟତମ ପୁଅର ନାଁ ଦିଆ ଯାଇଥିଲେ ତାହା ସ୍ନେହାଧିକ୍ୟରେ ହୋଇଯାଏ — 'ଜଗୁଲି' ସେହିପରି ଏହି, ପରମଶ୍ରଦ୍ଧେୟ ବସ୍ତୁଟିର ପ୍ରିୟନାମ 'ଠେଙ୍ଗା' ଏବଂ ପ୍ରିୟତମ ନାମ "ଠେଙ୍ଗୁଣୀ" । ପୁଣି ସେଇଥିରୁ ସୃଷ୍ଟି ହୋଇଛି ସେହି ଶ୍ରମକାନ୍ତଶବ୍ଦ—'ଠେଙ୍ଗେଇବା ।

ଅହୋ ! ଏକାକ୍ଷର ଯେ ଓଁ ତାହା – କୁଆଡ଼େ ବୀଜମନ୍ତ୍ର । କେଡ଼େ ପବିତ୍ର ସେ ଅକ୍ଷର, ସବୁ ପ୍ରଧାନ ପୁରାଣ, ଗୀତା ବେଦର

ଆଦ୍ୟରେ ନେଇ ଓଁ ! କିନ୍ତୁ ଏଇ ଯେ ଗୁରୁ ଅକ୍ଷର-ଟେଙ୍ଗେଇବା ଭଏ ସେଇ ଏକାକ୍ଷରର ଗୋସାଇଁ ! ଯେତର ଓଁ ଉଚ୍ଚାରଣ କଲେ ପାପତାପ ଦୁରିତ ଇତ୍ୟାଦି ଦୁରେଇ ଯାଏ, ଯମ ପାଖ ମାଡ଼େ ନାହିଁ; "ଟେଙ୍ଗେଇବ" କହି ଟିକିଏ ହୁଙ୍କାର ଦେଲେ ପାଗଳା ବଳୁଆ ଚାମୁଣ୍ଡା ଭୂତ କଳାବୁଢ଼ି ବୁଢ଼ୀଟାରୁ ଆରମ୍ଭ କରି ଚଲ ଜଙ୍କରବଟଳ କରିବାକୁ ବୋଷ୍ଣାରୁ ଥିବା କୃପାଳିଆ ଗୁଣ୍ଡାମାନେ ବି ପଡ଼ି ଚାହୁଣ୍ଡ ପଛେଇ ଯା'ନ୍ତି ବା ମାନେ ମାନେ ଘୁଞ୍ଚିଯା'ନ୍ତି । କିନ୍ତୁ ଗୋଟିଏ କଥା— "ନାୟମାତ୍ମା ବଳହୀନେନ ଲଭ୍ୟଃ ।" ଟିକିଏ ପରିଷ୍କାର କରି କହିଲି—ନାୟଂ ଟେଙ୍ଗା ବଳହୀନେନ ଲଭ୍ୟଃ । ଏଇ ଠେଙ୍ଗାକୁ ଅଧ୍ୟାତ୍ମର ଋଷି ଜପମୁକ୍ତ ସମସୂତ୍ରେ ଶନିଯୋଗ ମନ୍ତ୍ର ଟେଙ୍ଗେଇବା'ର ପ୍ରୟୋଗ ଶକ୍ତି ସାପେକ୍ଷ । ଦୁର୍ବଳସ୍ୟ କୁତଃ ଟେଙ୍ଗା ? ଯେଉଁଠି ସବୁ ଅକଲ ଗୁଡ଼ୁମ୍ ସେଇଠି—ହେ ଟେଙ୍ଗାଦେବ—"ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ, ତ୍ୱମେବ ସର୍ବଂ ମମ ଦଣ୍ଡଦେବ ।"

ଅଗତ୍ୟା କହିଲେ ଭଲ;—ସବୁ ମନ୍ତ୍ର କ'ଣ ସବୁରି ହାତରେ ସମାନ ଭାବେ କାମ କରେ ? ସବୁ ମୁନିଙ୍କ ହାତରେ ଲେଟମା କ'ଣ ଏକାଭଳି କର୍ମଠ ଦେଖାଏ ? ତୁମମାନେ କ'ଣ ବୁଣି ଚନ୍ଦର ଯେ କୌଣସି ସ୍ଥାନରେ ସମଭାବରେ ବଳଶାଳୀ ହୁଅନ୍ତି ? ଆଜି ପୁଣି ଭାବିଲେ ଦେଖ—ଠାକୁର ଠାକୁରାଣୀଏ ପ୍ରଭୃତି ମୂର୍ତ୍ତିରେ ସମାନ ଭ୍ରାତାପ ଭେଦ ବିରାଜମାନ କରୁଥିଲେ ବି ପଦ-ଆଦର କେବଳ ଏଠେଇଁଡ଼ାଏ ଲିଙ୍ଗ ଦେବତାଙ୍କୁ ମାନସିକ କରିବାର ଭକ୍ତିରେ ପଡ଼ନ୍ତି ?... ଆମ ଟେଙ୍ଗା ଦେବଙ୍କ କଥା

ସେହିପରି ଅଟେ । ସବୁ ସ୍ଥାନରେ ସବୁବେଳେ, ସମସ୍ତଙ୍କ ହାତରେ ଇଏ ମହାଶସ୍ତ୍ର ସମାନ କଉଶଳ ଦେଖାଇ ପାରନ୍ତି ନାହିଁ ।

ଏହା ତ ଲୁଚ୍ଛାପା କଥା ନୁହେଁ । ମହାପ୍ରଭୁ କେଉଁ ମୂର୍ତ୍ତି ଭିତରେ ପଶି ଚମକ ଚଳଉଛି ବେଶ ମହାନ ଆଡମ୍ବରରେ ଝାଁଜ୍ଜ ତ କେଉଁ ମୂର୍ତ୍ତି ଭିତରେ ବସି ଉଖୁଡ଼ା ପୋଷେକୁ ଅପେଇଥାନ୍ତି । ଆଜି ମଧ୍ୟ ପାଜୁରଣୀ କେଉଁ ବରଗଛ ମୂଳେ "ମୁଣ୍ଡିକାଶୁଗନ୍ଧାକ୍ରାନ୍ତା ବନ୍ଧ୍ୟାସ୍ତ୍ରୀ ପୁନ ଦାମ୍ପିକା ବାଡ଼ ମହାରାଣୀ ଦେବୀ..." ରୂପେ ପଥର ଢିମାରେ ପଶି ଖୁଡପାଣି ମୁହାଁଏ ଦେଖିବା ଲାଗି ବସିଥାନ୍ତି ତ କେଉଁଠି ଦିବ୍ୟ ସ୍ୱରୂପ ମନ୍ଦିର ମଧ୍ୟରେ ଚିନ୍ମୟୀ ମୂର୍ତ୍ତିର ଅନ୍ତରାଳରେ ବଳିଜନମାନ ହୋଇ ରକ୍ତାରକ୍ତ ନେତ୍ରରେ ବସି ଥାଆନ୍ତି । ସ୍ଥାନେ ସ୍ଥାନେ ଜଗଦମ୍ବାଙ୍କର ଦେହ ଉପ୍ରଟିଥିବା ଆଖି ଲହ ଲହ ଜିହ୍ୱା ଦେଖି ମନୁଷ୍ୟ ଶରୀରର "ପିଲେହି" ନାମକ ବସ୍ତୁଟି ମାଣି ହୋଇ ତଣ୍ଟି ଉପରେ ବାମ୍ଫ ହୋଇଯିବାକୁ ବସେ । ଶୁଣୁ ସଙ୍ଗେ, ସେହିପରି—ପିଆଶାଳ, ବାଉଁଶ, ବେତ ଭଳିଆ, ଆମ୍ବ, ତମିର ସବୁଥିରେ ଠେଙ୍ଗାଙ୍କର ଠେଙ୍ଗାଙ୍କ ସମାବେଶରେ ପ୍ରକାଶିତ ନ ହୋଇ ତଣ୍ଟିରେ ତାରତମ୍ୟ ଘଟେ । ଏଥିରେ କିଛି ଅବୁଝା ଅଥବା ଅଯୌକ୍ତିକତା ରହିଲା କି ?

—"ଦଳେଇ ତୁମରି ନାଁ ରଖିଚ, ଅଭିନନ୍ଦନ ବନ୍ଧୁ । ଭଗବାନ ଶ୍ରୀକୃଷ୍ଣ ଯେପରି ଚକ୍ରଧରି ସମସ୍ତଙ୍କୁ ଧାବାଡ଼ କରୁଥିଲେ, ତାଙ୍କ ନାଁ ହୋଇଥିଲା ଚକ୍ରଧର, ତୁମେ ସେହିପରି ଜଣେ 'ବୀରବର ଠେଙ୍ଗାଧର' । ହେ ଅଜ୍ଞାତ ବୀରବର, ତମରି ନାଁ ଅନୁସାରେ ଏବେ "ଦଳେଇ ଠେଙ୍ଗୁଣୀ" ପ୍ରବାଦଟି ପ୍ରଚଳିତ ।

କଟୁବଦନ ତଳେ ଗୋଟିଏ ପ୍ରସିଦ୍ଧ ସମ୍ବାଦପତ୍ରରେ ସମ୍ପାଦକୀୟ ବାହାରିଥିଲା—"ମୋଗଲରଜାଙ୍କ ହାତରେ ଠେଙ୍ଗା"। ତମେ କୋଉ ଯୁଗର ଅଖ୍ୟାତ ପୁର ଅଥବା ପଲ୍ଲୀର ହାତର ଯଷ୍ଟି ଆସି ଭେଟିଲ ଏ ଯୁଗର ମୋଗଲରଜାଙ୍କ ହାତରେ, ସାବାସ ଦୋସ୍ତ ।

ଯେପରି ଲୋକ 'ସ୍ପ୍ରିଙ୍ଗ୍' ହେଲେ ବହୁସ୍ଥାନରେ ପଶି ପ୍ରଭାବଅର୍ଜନ କରିପାରେ; ଆଧିକାରିକ ବ୍ୟକ୍ତିଙ୍କଠାରୁ "ବ୍ୟାକିଙ୍ଗ୍" ପାଇଲେ ହାତବଳ' ଅଥବା ଟେଙ୍ଗ ବାଣପରି ଆକାଶ ଝୁଲସାଇ ଉପରକୁ ଚମକିଯାଏ, ସେହିପରି ମହାତ୍ମା ଠେଙ୍ଗୁଶ୍ରୀ ଚନ୍ଦ୍ରଙ୍କର "ହିଟିଙ୍ଗ୍" ପାଇଲେ ବହୁ ଅଣାଯୁକ୍ତ ଲୋକ ଆଯୁକ୍ତକୁ ଆସନ୍ତି ।

ମୂର୍ତ୍ତି-ମନ୍ଦିର-ପୂଜକ-ପ୍ରତିଷ୍ଠିତା ଓ ଭକ୍ତଙ୍କୁ ଯେମିତି ଦେବତା ! ନିର୍ମାଣ ସାମଗ୍ରୀ ନିର୍ମାତାର କୌଶଳ ଏବଂ ସର୍ବୋପରି ଧାରଣ କରିଥିବା ବ୍ୟକ୍ତିର ବ୍ୟକ୍ତିତ୍ୱ ଓ ଶକ୍ତି ଯେମିତି ଠେଙ୍ଗା ଦେବତାଙ୍କର ପ୍ରତିଷ୍ଠା ଓ କରାମତି । ମନ୍ତ୍ରିଷିଆଲ ହାତରେ ଚଉକିଦାର ବା ପୁଲିସ ବାଲାଙ୍କ ହାତରେ ଅଥବା ଅନ୍ଧ ବୁଢ଼ାଟିର ହାତରେ ଆମର ମାନ୍ୟବର ଠେଙ୍ଗା ସମାନ କରାମତି ପ୍ରକାଶି ପାରନ୍ତିନାହିଁ । ସେ ଯେ କୌଣସି ବ୍ୟକ୍ତିର ମୁଣ୍ଡରେ, ହାତରେ, ଗୋଡ଼ରେ, ପିଠିରେ, ଯେକୌଣସି ଅଂଶରେ ବିଜେ କରିପାରିବେ । କିନ୍ତୁ ଏଥିପାଇଁ ବିଜେ କରାଇବା ବ୍ୟକ୍ତି ଦରକାର । ଆହା ଯେଉଁ ମହାମାନ୍ୟ ଠେଙ୍ଗା, ଗୁଣ୍ଡା, ପୁଲିସ୍ ଅଥବା ସେହି ଜାତୀୟ ବ୍ୟକ୍ତିଙ୍କର କରକମଳରେ ଅବତରିଲେ କେତେ କେତେ

॥ ୫ ॥

ମଣ୍ଡଳକୁ ନିଷ୍ପ୍ରଭ କରିପାରନ୍ତି, ସିଏ ପୁଣି ବୈରାଗୀ ଭିକାରୀଙ୍କର ହାତରେ କେତେ ନିସ୍ପୃହ ଓ ଦର୍ପଶୂନ୍ୟ ଦିଶନ୍ତି । ପୁଣି ବୁଢ଼ା ହାକିମହୁକୁମାଙ୍କ ହାତରେ—ହଲହଲ ଝୁଲୁଥିବା ବେଳେ ତାଙ୍କର କୁନୁମୁନିଆ ରୂପଟି କେତେ କମନୀୟ ନଦିଶେ ! ଏଥିପାଇଁ କି'ଣ —"ନ ପୂର୍ବଧାତ୍ରୁଃ କୋ ବୃଦ୍ଧି ଯୋଽଭୂତ୍ ?"

କହିଛୁ ଏ ଦେବତାଙ୍କର ଶ୍ରଦ୍ଧା ନାମ ହେଲା "ଠେଙ୍ଗା" କିନ୍ତୁ ସାଧୁ ନାମ 'ଦଣ୍ଡ', ସରକାରୀ ନାମ ଲାଠି, ଘରୋଇ ନାମ 'ବାଡ଼ି', ଏବଂ ଲୌକିକ ନାମ ଛଡ଼ି !

ଏହି ଦଣ୍ଡ ଦେବଙ୍କୁ ହାତରେ ଧରି ଶଙ୍କରାଚାର୍ଯ୍ୟ ଭାରତ ପରିକ୍ରମା କରିଥିଲେ, ହୁଏନ୍‌ସାଂ ଚୀନରୁ ଆସିଥିଲେ, ବିବେକାନନ୍ଦ ଶିକାଗୋ ଯାଇଥିଲେ ମହାତ୍ମା ଗାନ୍ଧୀ ଦାଣ୍ଡି ମାର୍ଚ୍ଚ କରିଥିଲେ ଏବଂ ବିନୋବା ଭୂଦାନ ପଦଯାତ୍ରା କରୁଛନ୍ତି । ପୁଣି ସରକାରୀ କ୍ଷମତାରେ ଏଇ ଦଣ୍ଡ ବା ଠେଙ୍ଗା "ଲାଠି" ନାମ ଘେନି ବିଦେଶୀ ଓ ଦେଶୀ ଶାସନ ଅମଳରେ କେତେ କେତେ ଲୋକଙ୍କ ମୁଣ୍ଡ ଓ ପିଠିରେ ବିଜେ କରିଥିଲେ ଓ କରନ୍ତି । 'ବାଡ଼ି' ନାମରେ କେତେ କେତେ ବ୍ୟକ୍ତି ଏହାକୁ ଆଭିଜାତ୍ୟର ସୂଚକ ରୂପେ ସାଧାରଣତଃ ଆଶ୍ରା କରି ଧରନ୍ତି । ପୁଣି ଏହା ଛଡ଼ି ନାମରେ ନଚଡ଼େ ବା କାହାକୁ ?

ଶ୍ରୀକୃଷ୍ଣ ଯେପରି ନନ୍ଦର ଗାଈଗୋଠ, ଯଶୋଦାଙ୍କ ଦଧି ମନ୍ଥନ ସ୍ଥାନ; ଯମୁନାର ମଞ୍ଜୁଳ କୁଞ୍ଜ-ବନ, କଂସର ରଙ୍ଗସଭା ପାଣ୍ଡବଙ୍କର ଅନ୍ତଃପୁର, ବିଦୁରର ଭଙ୍ଗା କୁଡ଼ିଆ, ହସ୍ତିନାର

ସମରାଙ୍ଗନ ସବୁ ସ୍ଥାନରେ ପ୍ରବେଶ କରି ଆପଣାର ଆଧିପତ୍ୟ ଜାହିର୍ କରନ୍ତି; ତଦ୍ରୂପ ଠେଙ୍ଗୁଣୀ ମହାରାଜଙ୍କର ଗତି ସବୁଆଡ଼କୁ ଏବଂ ସ୍ଥିତି ଓ ପ୍ରତିଷ୍ଠା ଯେ କୌଣସି ସ୍ଥାନରେ ଘଟିପାରେ । ଇଏ ଅନ୍ଧାରେ, ଆଲୁଏ ଦିନରେ ରାତିରେ, ରାତିଅଧିଆ ଯେଽକୌଣସି ସମୟରେ ଚଢ଼େଇ କରିପାରନ୍ତି । ଏଙ୍କୁଇ ମୁଖ୍ୟ ମାନି ଏକ ଶାସନ ବା ତନ୍ତ୍ର ପ୍ରତିଷ୍ଠା କରାଯାଇ-ପାରେ । ଏପରି ହେଲେ ତାକୁ କୁହାଯାଏ—ଠେଙ୍ଗାର ଶାସନ ବା ଠେଙ୍ଗୁଣୀ—ତନ୍ତ୍ର ! ଅବଶ୍ୟ ଏହା ଗଣତନ୍ତ୍ରର ଓଲଟା ଏବଂ ରାଜତନ୍ତ୍ରର ପାଖାପାଖି ! !

ହେ ମହାମାନ୍ୟବର ମହାପ୍ରଭୁ ଠେଙ୍ଗା, ଯେଉଁଠି ସକଳ ଅକଳ ଗୁଡ଼ୁମ୍, ସେଇଠି—

"ତ୍ୱମେବ ମାତାଶ୍ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ
ତ୍ୱମେବ ବୁଦ୍ଧି କଟେଶ୍ୱ ତ୍ୱମେବ
ତ୍ୱମେବ ସର୍ବ ମମ ଦଣ୍ଡ ଦେବ ।"
ଓଁ ଶ୍ରୀମଦ୍ ଠେଙ୍ଗା ଦେବାୟ ନମଃ ।



* ସ୍ୱରାଜ୍ୟ—୧୯୬୭ ପୂଜା ସଂଖ୍ୟାରେ ପ୍ରକାଶିତ ।

# ଅଇଲାଣି ବଲାଇ



'ଆପଣ ହୁଏତ କହିବେ—ଏହା ସାହିତ୍ୟ ନା ମ୍ୟାଜିକ୍ ସମାଲୋଚନା ନା ସଂକୀର୍ତ୍ତନ, ଅର୍ଥ ନା କଦର୍ଥ, ଏହା କେବଳ ନୂତନ-ବ୍ୟାଖ୍ୟା ବୁଦ୍ଧି ବଳାପେକ୍ଷା ।" ଗଜ ଅର୍ଥ କରୁଛି—'

"ବୋଇଲା—ବ୍ୟାଖ୍ୟା ବୁଦ୍ଧି ବଳାପେକ୍ଷା । ଯିଏ ଯେତେ ବୁଦ୍ଧି ଅଛି, ସିଏ ସେତିକି କସରରେ କବିଙ୍କି ଓ ତାଙ୍କ ଲେଖାକୁ ବୁଝାଇ ପାରିବ । ଏଇ ଦେଖ—"ଅଇଲାଣି ବଲାଇ ମୂଷା ଯିବ ଟୋଇ" ଇଏତ୍ ଜଣେ କମ୍ କେ ? ଏକୁ କେତେ ପ୍ରକାର ଅର୍ଥ କରା-ଯାଇପାରେ ଜାଣ ?'' ଆଖି ଚଟାଣି ମୁଣ୍ଡ ହଲାଇ ଅଧକ୍ଷ ଗଜେନ୍ଦ୍ର ହାଙ୍କିଲେ । ମୁକୁନ୍ଦ ଭଉଁଡଏ ମୁଣ୍ଡ ହଲାଇ ସମର୍ଥନ କଲେ—ହଇ ମଧୁ ବାଓ ଜଣ କମ୍ କବ । ହଏ ବ୍ରହ୍ମଦର୍ଶନ କରିଥିଲେଟି ସିଏ ! ଆହା-ହା-ହା ବ୍ରହ୍ମ ସ୍ତୁ··ସ୍ତୁ···ସ୍ତ, ଆଖି ବୁଜ ଜପମାଳକୁ କୋଥଳି ସହିତ ଝଣ୍ଡା ଭଳିଆ ଉପରକୁ ଟେକ ଦଣ୍ଡବତ କଲେ ସଙ୍କର୍ଷଣ ସୁବୁଦ୍ଧି । କଏ ତାଙ୍କୁ ଦେଖିବା ହୋଇଛନ୍ତି ବୋଲି କହି ୍ଟି ବାପ ? "ମଧୁ ବାଏ··ବର୍ଣ୍ଣବୋଧକର ଲେଖକ । ପିଲାଏ

ପଢ଼ନାହାନ୍ତି ?" ବୁଝାଇଲା ପରି କହିଲେ ତିଆଡ଼ିଏ । 'ହଇ ମୁଁ ଜାଣିନ କି ଯୋଉଥିରେ ଇହା,କମଳ ଲୋଚନ ନନ୍ଦକିଶୋ, କଳା କଳେବର କହ୍ନାଇ ହେଉକା ଅଛନ୍ତି ଠିକ ?"...'ହଁ ସେଥିରେ ନାହିଁ କଣ ।' ଗଜ ଅର୍ଥ ବୁଝାଇବାକୁ ଅଥୟ ହେଲଣି ।...

ସୁବୁଦ୍ଧି ଟିକିଏ ଭାବିଲା ପରି ହୋଇ ମନେ ପଡ଼ି ଆସିଲା ପରି ମୁଣ୍ଡ କୁଣ୍ଡାଇ ପଚାରିଲେ—'ହଏ ତା'କୁ ବଳରାମ ଦାସ ହେଉକା ନେଖିଥେଲେ ନା କଣ !'

—ଓହୋ ଇହା...ଇସ୍ଟୋମ' ଏଇ ମଧ୍ୟ ରାଓ ତାକୁ ଲୁଚିଦେଇ ଥେବେ ! ନାଇଁ ?" '...ଜାଇଁଲ, ଏତେ ବେଳଯିକ ତେମେ କଥାଟା ବୁଝିଚ ସୁବୁଦ୍ଧିଏ ?' ତିଅଡ଼ିଙ୍କ ଚାଲମ ଟିକିଏ ଟାଣ ହେଲଣି କି କଣ ।

ଗାଁ ପ୍ରୌଢ଼-ଶିକ୍ଷାପ୍ରତନର ସର୍ବମୟ କର୍ତ୍ତା ସମାଜସେବକ, କର୍ମୀ, ଅଧ୍ୟକ୍ଷ ଗଜେନ୍ଦ୍ର ହାଙ୍କୁଚି । 'ଅଇଲଣି ବିଲଇ' ଏଠି 'ବିଲଇ' ଶବ୍ଦଟିର କଣ ଗୋଟିଏ ମାତ୍ର ଅର୍ଥ ବୋଲି ଭାବୁଛନ୍ତି ଆପଣମାନେ ? ମସ୍ତାନ୍ ଗୃମର ଇଆ ଭିତରେ ଅଛି ।' ସତେ ଯେପରି ଶୁକ, ସୌନକ ଆଦ୍ଦ ଛୁଡ ଯାଇଥିବା ବ୍ରହ୍ମତତ୍ତ୍ୱର ଗୂଢ଼ ରହସ୍ୟକୁ ମର୍ତ୍ତ୍ୟ-ଲୋକରେ ପ୍ରଚାର କରିବାକୁ ବାହାରିଚ ଆମ ଗଜ ! ଦ୍ୱିଗୁଣ ତେଜରେ କହି ଚାଲିଛି—'ଏଇ ମାଷ୍ଟରମାନେ ପିଲାଙ୍କୁ ବୁଝାଇ ପାରୁ ନାହାନ୍ତି । ତିଆଡ଼ିଏ, ସୁବୁଦ୍ଧିଏ ତମେ ତ ସବୁ ଭବଗ୍ରାହୀ ଲୋକ । ପାଲା, ଦାସକାଠିଆ ଦେଖିଛ । ପୁଣି ଭଞ୍ଜ ସଭାକୁ ଯାଇ ଥେଲଟି ? କେତେ ଅର୍ଥ ଅର୍ଥାନ୍ତର କାଢ଼ି ବଡ ବଡ ବକ୍ତା

ପ୍ରଫେସରମାନେ ବୁଝାଇ ବୁଝାଇ ବକ୍ତୃତା ଦେଲେ ? ସବୁ କବିଙ୍କୁ ଯେମିତି ବୁଝିଲେ ଯିନା ହେବ ! ଖାଲି କ'ଣ ନା ଗଲି ଅଇଲି ଯାହା ଦେଖିଥିଲା ତାହା କହିଲି ଠାକୁରକୁ—ଦୃସା ! ହେଃ !' ଶ୍ରୋତାମାନେ ମୁଣ୍ଡ ଝୁଲାଇଲେ ।

ଶ୍ରୋତୃବର୍ଗ ଆଁ କରି ଅନାଇଛନ୍ତି । ଗଜ ହାକୁଛି । 'ଅଇଲାଣି ବାଲାଇ' ମାନେ ଏଠି ରେ ବାଲାଇ ହେଲା ଦୁର୍ନୀତିନିବାରଣ ବିଭାଗ । ଯିଏ ଅଇଲାଣି ମନେ ଦୁର୍ନୀତି ନିବାରଣବାଲାଏ ଜାଗ୍ରତ ହୋଇ—କର୍ମତତ୍ପର ହୋଇ—କଣମୋଡ଼ ଆସି ପହଞ୍ଚି ଗଲେଣି । ବର୍ତ୍ତମାନ 'ମୁଷା' ବୋଇଲେ ତସ୍କର, ଦୁର୍ନୀତି ପରାୟଣ, ଲାଞ୍ଚଖୋର ଲୋକଙ୍କର ଅବସ୍ଥା କଣ ହେବ ଆପଣମାନେ ଟିକିଏ, ଅଖିବୁଜି ଚିନ୍ତାକଲେ !

କିନ୍ତୁ ଶ୍ରୋତୃବର୍ଗ, ଖାଲି ଏତିକି ନୁହେଁ, ଏଥିରେ ଆଉରି ଏକ ଅର୍ଥ ଅଛି । 'ଚ' ବୋଇଲେ ବିଭବ 'ଲ' ଚାତୃର୍ଯ୍ୟ ଲାଭ, 'ଇ' ମାନେ 'ଇଲାଗେ' କି ବର୍ତ୍ତମାନ—ଅର୍ଥ ହେଲା ବିଭବ ଲାଭ ବାଟ ଦେଇ ଏଇଲାଗେ ଆସି ପହଞ୍ଚି ଗଲାଣି । କଣ ହୋଇଗଲା ହେବଠ ? ଦୈନ୍ୟ, ଯିଏ କି ମୁଷା ପରି ଗାତଭିତରେ ଲୁଚି ରହି-ବାକୁ ଖୁଜୁଛି, ସିଏ ପଳାଇ ଯିବ । ଧନ୍ୟ କବି, ନମସ୍ୟ ତୁମେ କି ଗୁଢ ରହସ୍ୟ ଏହା ଭିତରେ ନ ରଖିଛ ? ଗଜ ନିମିଷକ ପାଇଁ ଆଖି ବୁଜିଲା—ମୁଣ୍ଡ ଝୁଲାଇଲା ।

ଗଜ ଆଖି ମେଲାଇଲା, ପୁଣି ହାକିଲା—ବିବୁଧ ଶ୍ରୋତୃବର୍ଗ ! କବି କେବଳ ଏତିକି ଭାବି ଏ କଥା ଲେଖି ନାହାନ୍ତି, ଏହା ଭିତରେ

ଅନ୍ତର—ଗୂଢ଼ ଅର୍ଥ ବଦ୍ୟମାନ । ଆପଣମାନେ ଜାଣିଥିବେ—ଆମେ କଥାପ୍ରସଙ୍ଗରେ କହୁ—'ବାଘ ନଦେଖିଲେ ବିଲେଇ ଦେଖ ।' ଅର୍ଥାତ୍ ବାଘଗୁଡ଼ାକ ଚାଲିଗଲେ ଭଲଆ, ଆଗେ ବ୍ରିଟିଶ ଗଭର୍ଣ୍ଣରେ ଯେଉଁ ଶାସକମାନଙ୍କୁ ବାଘ କୁହାଯାଉଥିଲା, ଏବେ ସେମାନଙ୍କୁ ବିଲେଇ କୁହାଯାଉଛି । ବିଲେଇ କ ମାର୍ଜାର ଆସିଗଲେ ମୂଷା ବା ମୂଷିକମାନେ ଯେମିତି ଗର୍ତ୍ତରେ ପ୍ରବେଶ କରନ୍ତି, ସେହିପରି ଅପେକ୍ଷା ରୂପକ ବିଲେଇ ମାନଙ୍କୁ ଦେଖି ବାହାରେ ନୁଙ୍ଗ୍ ନୁଙ୍ଗ୍ ହେଉଥିବା ଅସନ୍ତ୍ରନ କର୍ମଚାରୀରୂପକ ମୂଷାମାନେ ଗର୍ତ୍ତ କ ସେମାନଙ୍କର ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କୁ ଗୁଳିଯିବେ । ଏହା ମୋର ନୈକଶ୍ୟ କରୁଥିବା ଶ୍ରୋତା ମାନେ ବେଶ୍ ହୃଦୟଙ୍ଗମ କରିପାରିବେ ।

ଏହାକୁ ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ, ଆଉ ଏକ ଅର୍ଥ ପ୍ରକାଶିତ ହୁଏ । ଆପଣମାନେ ଶୁଣିଲେ ଅବାକ୍ ହୋଇ-ଯିବେ (?) ଯେ—ମଧୁସୂଦନ ୧୮୯୫ ମସିହାରେ 'ବର୍ଣ୍ଣବୋଧ' ଛାପିଥିଲେ । ସେତେବେଳକୁ ସିଏ ୪୭ବର୍ଷ ବୟସର ପ୍ରୌଢ଼ । ଅବସର ଗ୍ରହଣ କରିବାପାଇଁ ମେତେବେଳେ ହିସାବରେ ୧୩ବର୍ଷ ମାତ୍ର ବାକି । ବଡ଼ କଳ୍ପନା-ବିଳାସୀ କିନା ? କଳ୍ପନାର ନେତ୍ରରେ ଦେଖୁଛନ୍ତି—'ଅଇଲଣ୍ଟ ବଳାଇ' ଅର୍ଥାତ୍ 'ଅବସର ନେବା ସମୟ' ପାଖେଇ ଆସିଲାଣି । ଏହାପରେ ମୁଁ—ବେସରକାରୀ ନାଗରିକ-ହିସାବରେ ସ୍ୱାଧୀନଭାବେ ସମାଜସେବା, ସଂଗଠନ ଇତ୍ୟାଦି କରିବି, ସ୍କୁଲରେ ଚାକିରି ସିନା କରୁଥିଲି, ନିଜେ ସ୍କୁଲ ବସାଇ ମାଷ୍ଟର ନିଯୁକ୍ତ କରିବି । ମୋ ଭିତରୁ 'ଚାକିରିଆ ମନୋବୃତ୍ତି' ରୂପକ ମୂଷା ପଳାଇଯିବ । ଏଥିରୁ ପୁଣି ଏକ ସମାଜୈତିହାସିକ ଦୃଷ୍ଟିଭଙ୍ଗୀର ସୂଚନା କେତେକ କେତେକ ସମାଲୋଚକ ଆବିଷ୍କାର କରିପାରନ୍ତି କାହିଁକିନା

କବି ଏ ସମସ୍ତଙ୍କୁ ଉତ୍କଳ-ପ୍ରଦେଶରେ ଶିକ୍ଷାର ପ୍ରସାର ଲକ୍ଷ୍ୟକରି ଜଣାଉଛନ୍ତି —ଏଥରକ ଅଜ୍ଞତାର ମୂଷିକ ଏ ଭୂମିରୁ ପଳାୟନ କରିବ, ମାତ୍ର ଶ୍ରୋତୃବର୍ଗ, ଏପରି ଅର୍ଥରେ ଟିକଏ ପ୍ରମାଦ ପରି-ଲକ୍ଷିତ ହୁଏ । କାରଣ 'ମୂଷା' ଗଣେଶଙ୍କର ବାହନ ହୋଇଥିବାରୁ ଜ୍ଞାନର ପ୍ରତୀକ । ସୁତରାଂ ଏପରି ଅର୍ଥ ସଂଗତ ନୁହେଁ ।

ଏଥିକୁ ଏହାର ଅସଲ ଐତିହାସିକ ଦିଗଟି ଆପଣମାନେ ଅବଧାରଣ କରନ୍ତୁ । ସେତେବେଳକୁ ଅର୍ଥାତ୍ ବର୍ଣ୍ଣବୋଧ ପ୍ରକାଶିତ ହେବାର ୧୯ବର୍ଷ ପୂର୍ବରୁ ଭାରତ ଜାତୀୟ କଂଗ୍ରେସର ମୂଳଭିତ୍ତି ପଡ଼ି ସାରିଥିଲା । କବି ଦୂରଦ୍ରଷ୍ଟା କି ନା ? ତେଣୁ ସେ ଜାଣିପାରି-ଥିଲେ, 'ବନ୍ଦେ ମାତରମ୍ ଜାତୀୟତା' ବର୍ତ୍ତମାନ ମୂର୍ତ୍ତିମନ୍ତ ହୋଇ ଆସିଗଲାଣି । ତେଣୁ ମୂଷାପରି ଆମକୁ ଭିତରୁ ଭିତରୁ କୋରି ଖାଇ ଯାଉଥିବା ବ୍ରିଟିଶ ସରକାର—ପଳାଇଯିବ । ଦେଖନ୍ତୁ ଅବଧାନ ମହାଶୟ,ଏହି ପୁସ୍ତକ ପ୍ରକାଶିତ ହେବାର ଅର୍ଦ୍ଧଶତ ବର୍ଷ ଏହି ଭବିଷ୍ୟତ୍ ବାଣୀ ଉଚ୍ଚାରଣ କରିବାର ୬୨ବର୍ଷପରେ ଭାରତରୁ'ମୂଷା'ରୂପକ ବିଦେଶୀ ଶାସନ ପଳାଇଛି । ଏଥିପାଇଁ କବିଙ୍କୁ ଦ୍ରଷ୍ଟା, ତ୍ରିକାଳଦର୍ଶୀ କୁହାଯାଏ । ମଧୁସୂଦନଙ୍କର ଦୁର୍ଭାଗ୍ୟ ଯେ ତାଙ୍କର ଅସଲରୂପକୁ ଏ ପର୍ଯ୍ୟନ୍ତ କେହି ବୁଝିପାରି ନାହାନ୍ତି ।

ଏହାର ପୁଣି ଏକ ମନସ୍ତାତ୍ତ୍ୱିକ ଦିଗ ଅଛି । କବିଙ୍କ ମନର ଅବସ୍ଥା ଏଥିରେ ଫୁଟିଛି । ଆପଣମାନେ ଶୁଣିଲେ ଅବାକ୍ ହୋଇ-ଯିବେ, ଆମର ଭକ୍ତକବି ଜଣେ ସାମାନ୍ୟ ଶୁଳବେମାରିଆ ଥିଲେ । ଆପଣମାନଙ୍କ ଭିତରୁ ମଧ୍ୟ କେତେକଙ୍କୁ ଅବଶ୍ୟ ଭଗବାନ୍ ନକରନ୍ତୁ, ଏଇ ରୋଗ ହୋଇଥିବ ।' ମଧୁ ଉଆଡ଼ଏ ଆଖିବୁଜି ମୁଣ୍ଡ ହଲାଇ

କହିଲେ, ହଁରେ ବାପ, ମୁଁ ଚଗ ସେଇଥିପାଇଁ ଅଫିମ ଟିକଏ ଖାଉଚି...ନ ହେଲେ... । ଗଜ ଟାଳିଟାଏ ମାରିଦେଇ କହନ୍ତି, 'ବାସ୍ ଆପଣ ଅନୁଭବ କରୁଥିବେ ଏ ବେମାରି ମୂଷାପରି ମଣିଷକୁ ଭିତରୁ କୋରି ଖାଇଯାଏ । ତେଣୁ କବି ଧାବୁ ଚନ୍ଦ୍ର ମୋର ତ ବର୍ତ୍ତ-ମାନ 'ବଳଇ' କି 'ମୃତ୍ୟୁ', ସମସ୍ତ ଆସନ୍ନ ହୋଇ ଆସିଲାଣି; ଆଜି 'ମୂଷା'ବା ଶୂନ ବେମାରି କ'ଣ କରିବ ?'...ତିଆଡ଼ଏ କହିଲେ— 'ହେଲେ ବାପ... ।' 'ରହନ୍ତୁ' —ଗଜ ହାକୁଟି । —ଏହାର ଏକ ଧାମିକ ଅର୍ଥ ମଧ୍ୟ ଅଛି ।' ସୁବୁଦ୍ଧି ଏ ପଚାରିଲେ—''କଣ କହିବା ହେଲେ—ଧର୍ମ ?'' ଶାନ୍ତପଥୀ ଏ ନଶ ଚେଷ୍ଟି କହିଲେ —ହଁ । ଧର୍ମୋ ରକ୍ଷତି— ଧାର୍ମିକଂ...ହେଃ ।''

''କବି ଥିଲେ ବ୍ରାହ୍ମଧର୍ମାବଲମ୍ବୀ ଗଜ ବୁଝାଉଛି, 'ସେତେବେଳକୁ ଏ ଦେଶରେ ଏକ ଧର୍ମସଙ୍କଟ ଉପୁଜିଛି । ବହୁଲୋକ ଖ୍ରୀଷ୍ଟାନ ହୋଇ ଯାଉଅଛନ୍ତି ହିନ୍ଦୁ ଧର୍ମ ଭିତରେ ଗ୍ଲାନି ପଶିଛି ।'' ଗ୍ଲାନି ଭବତି ଭାରତ ''ହେଃ ହେଃ'' ଶାନ୍ତପଥୀଙ୍କର ସଂସ୍କୃତ ଜ୍ଞାନ ଉବୁକେଇଲା । ଗଜ ଅଧୈର୍ଯ୍ୟ ହୋଇପଡ଼ି କହିଲା—ଶୁଣନ୍ତୁ ଏଇଟି ହେଉଛି ଗଣ୍ଠି ସମସ୍ତ । ଏ ଅବସ୍ଥାରେ କବିଙ୍କର ସମସାମୟିକ-ମାନଙ୍କ ମଧ୍ୟରୁ ଫକୀରମୋହନ କେଉଁ ଧର୍ମ ଧରିବେ ଜାଣି ପାରୁ ନାହାନ୍ତି । ରାଧାନାଥଙ୍କର ହିନ୍ଦୁ ଧର୍ମ ଛାଡ଼ିବାକୁ ସାହସ କୁଳଉନାହିଁ । ବିଶ୍ୱନାଥ କରେ ବ୍ରାହ୍ମଣ ହୋଇ ସାରିଲେଣି । ଏସବୁ କାହିଁକି ହୋଇଛି ? ହିନ୍ଦୁଧର୍ମ...ଆମର ପବିତ୍ର ହିନ୍ଦୁ ଧର୍ମରେ ନାନାଦି କୁସଂସ୍କାର ପଶିବା ହେତୁ । ତେଣୁ ତାକୁ ସଂସ୍କାର କରି ଧର୍ମ ସଂସ୍ଥା-ପନାର୍ଥେ ପୁଣି ବହୁ ସଂସ୍କାରକ ଜନ୍ମିଥିଲେ । ସେମାନେ ହେଲେ— ରାଜା ରାମମୋହନ ରାୟ, କେଶବ ଚନ୍ଦ୍ର ସେନ୍, ମହର୍ଷି ଦେବେନ୍ଦ୍ର-

ନାଥ ଠାକୁର ଇତ୍ୟାଦି । ଏମାନେ ହେଲେ ବଳଦ, କୁସଂସ୍କାରଗ୍ରସ୍ତ ବ୍ରାହ୍ମଣମାନେ, ଯେଉଁମାନଙ୍କୁ ଲକ୍ଷ୍ୟକରି କବୀର ଗାଇଥିଲେ—

"ବ୍ରାହ୍ମନ ଭୈସ୍ବାରୋ କ୍ୟା ଭୟୁ
କୁଲ ଲପଟେ ସୁତ
ଭକ୍ତିଭାବ କା ମରମ ନ ଜାନେ
ଐସା ଜଙ୍ଗଲୀ ଭୂତ ।"

ସେମାନେ ହେଲେ ମୂଷା । ତେଣୁ କବି କହୁଛନ୍ତି, ଏମାନେ ଏଣିକି ପଳାଇବେ ଏବଂ ମୂଷାମାନେ ପଳାଇଲେ—ଆମାରରେ ଧାନ ସୁରକ୍ଷିତହୋଇ ରହିଲାଭଳି ହିନ୍ଦୁ ଧର୍ମ ସୁରକ୍ଷିତହୋଇରହିବ ।'

ଚଟ୍ଟୋପାଧ୍ୟାଏ, ଶତପଥୀଏ, ମିଶ୍ର, ନନ୍ଦେ ଉତ୍ତର ଗ୍ଭୈଗଇ କୋରସ୍ ଦେଲେ—ସେ...ଜଣ କହିଲୁ ? ହ୍ୟାପୋ ଚଣ୍ଡାଳ ।" ଗଜ ବକ୍ତାସୁଲଭ ବିନମ୍ରଭଙ୍ଗୀରେ କହିଲେ —

"ଆହା ଆପଣମାନେ ରାଗିଗଲେ କି ? କବି ଆପଣମାନଙ୍କୁ ଏଠାରେ ଲକ୍ଷ୍ୟ କରି ନାହାନ୍ତି । ସେଥିପାଇଁ ମୁଁ ତ କହୁଛି କୁସଂସ୍କାରଗ୍ରସ୍ତ ବ୍ରାହ୍ମଣ । ଆପଣମାନେ ହେଲେ ବ୍ରାହ୍ମଣ—ଉତ୍କୃଷ୍ଟ ବ୍ରାହ୍ମଣ, କୁସଂସ୍କାରଗ୍ରସ୍ତ ନୁହନ୍ତି ।" ନାଗ, ଅଗ୍ରୱାଲ, ଅଜଗର-ବୃନ୍ଦ ମନ୍ତ୍ର ଶୁଣି ମୁଗ୍ଧ ହେଲେ । ଫଣା ନୁଆଁଇଲେ, ସତ୍ପଟି ମୁଣ୍ଡ ହଲାଇ କହିଲେ – ନା ଆମେ ବ୍ରାହ୍ମଣ, ଖାଣ୍ଟି ବ୍ରାହ୍ମଣ, ଶାସନୀ ବ୍ରାହ୍ମଣ । କାନ୍ୟକୁବ୍‌ଜରୁ ଆସିଥିଲୁଁ ।" ଗଜ ମନେ ମନେ ଉଷତ ହେଲା । ବକ୍ତୃତାର ଗଡ଼ମଡର ସ୍ରଟଧଣକୁ ଓହ୍ଲାଇଲା ।

"ଏହାର ଆଦ୍ଧର ଏକ ତାତ୍ପର୍ଯ୍ୟ ଅଛି । ଆଙ୍ଗୁଠିରେ ଗଣନ୍ତୁ — 'ଅ ଇ ଲ ଣି ବ ଲ୍ଲ ଇ ମୁ ଷା ଯି ବ ଚ ଲା ଇ ।' ସମୁଦାୟ ୧୪ଟି ଅକ୍ଷର । କବି କ'ଣ ୧୬ ଅକ୍ଷର ରାମକେରୀ, ନବାକ୍ଷରୀ ଭୃଗଚ୍ଛନ୍ଦ ବୃତ୍ତ ବା ଅନ୍ୟାନ୍ୟ ଚୋଖି ବଙ୍ଗଳା କେଦାର, ପଞ୍ଚମ ବରାଡ଼ି; ଧନାଶ୍ରୀ ଇତ୍ୟାଦିରେ ଲେଖି ପାରି ନ ଥାନ୍ତେ ! ତେବେ ଏପରି ୧୪ ଅକ୍ଷର ପଦଟିଏ ଲେଖିଲେ କାହିଁକି ? ପୁଣି ଏହା ଦୁଇପାଦରେ ବିଭକ୍ତ । ପ୍ରତି ପାଦ ୭ ଅକ୍ଷର ବିଶିଷ୍ଟ । ଏହାର ତାତ୍ପର୍ଯ୍ୟ ଅଛି । ସାତ ଏବଂ ଚଉଦ ଅମର ପ୍ରିୟ ସଂଖ୍ୟା, ଆଦିକବି କିଏ ? ଗଜ କୋଣ୍ଡି ନ ପକେଇ ଦେଲା ! ସ୍ୱବୁଦ୍ଧି ଏଥି ଡେଁ ଚି ହୋଇ କହିଲେ — "ଉହା···ଜଗନ୍ନାଥଦାସେ ! ଗଜ ଶଉଳ — "ହେଃ, ବାଲ୍ମୀକି ।"

ଆଦିକବି ବାଲ୍ମୀକି ପବିତ୍ର ରାମାୟଣ ଗ୍ରନ୍ଥକୁ ସାତକାଣ୍ଡରେ ବିଭକ୍ତ କରିଛନ୍ତି । ସିଏ କ'ଣ ଅଷ୍ଟମକାଣ୍ଡ ଲେଖି ପାରି ନ ଥାନ୍ତେ ନା ଛ' କାଣ୍ଡରେ ସାରିପାରି ନ' ଥାନ୍ତେ ? ତା' ପରେ ପୁଣି ତା'ର ପ୍ରଧାନ ନାୟକ ପ୍ରଭୁ ଶ୍ରୀ ରାମଚନ୍ଦ୍ର — ଚଉଦବର୍ଷ ବନବାସ ଯାଇଥିଲେ । ଏହି ସାତ ସଂଖ୍ୟାକୁ ଆପଣମାନେ ବ୍ୟାସଙ୍କ ମହାଭାରତରେ ମଧ୍ୟ ଦେଖିବେ, ସେଥିରେ ମହାରଥୀଙ୍କ ସଂଖ୍ୟା ସାତ, ଆକାଶକୁ ଅନାନ୍ତୁ—ସେଥିରେ ସପ୍ତର୍ଷିମଣ୍ଡଳ ଦେଖିବେ । ଋଷି ହେଲେ ସାତ । ପୁଣି 'ବାଇ ନୀଳ ହଳଦୀ' ରଙ୍ଗ ସଂଖ୍ୟା ସାତ । ଇନ୍ଦ୍ରଧନୁର ରଙ୍ଗ ସାତ । ସୂର୍ଯ୍ୟଙ୍କର ଘୋଡ଼ାର ସଂଖ୍ୟା ସାତ । ଏଠାରେ ସ୍ମରଣ କରାଯାଇ ପାରେ କି ପ୍ରାଚୀନ ଉତ୍କଳରେ ସୌର ପୂଜା ପ୍ରଚଳିତ ଥିଲା । କୋଣାର୍କର ସୂର୍ଯ୍ୟମନ୍ଦିର ଏବଂ ରଥନାରାୟଣ ବ୍ରତ ଇତ୍ୟାଦିରେ

ତା'ର ଭ୍ରମ'ଣ ରହିଅଛି । କବିଙ୍କୁ ଏହା ପ୍ରଭାବିତ କରିଥିବା ବିଚିତ୍ର ନୁହେ । ପୁଣି ଦେଖନ୍ତୁ ଆମେ ସକାଳେ ଉଠିଲେ ସାତଜଣ ଚିରଂଜୀବୀ ଲୋକଙ୍କୁ ସ୍ମରଣ କରୁ । ସୁବୁଦ୍ଧି ଏ ଶ୍ଳୋକ ଜାଣିଥିବ—

ଅଶ୍ୱତ୍ଥାମା ବଳିର୍ବ୍ୟାସୋ ହନୁମାଂଶ୍ଚ ବିଭୀଷଣଃ
କୃପ ପରଶୁରାମଶ୍ଚ ସପ୍ତୈତେ ଚିରଜୀବିନଃ ।

ଏ ଜନେ ହେଲେ ସାତ । ପୁଣି ଆମର ବାର ସଂଖ୍ୟା ସାତ । ମାସକ ଦୁଇପକ୍ଷ । ସାତକୁ ଏଇ ଦୁଇରେ ଗୁଣିଲେ କେତେ ? ଗଜ ଅଙ୍କ ପରୀକ୍ଷା ଦେଲା । ଶତପଥୀଏ କହିଲେ, "ଚ୍ୟୌଦ୍ଦ'ଶ ।"—'ହଁ ।' ଚତୁର୍ଦ୍ଦଶ ବା ୧୪ ଏଇଟି ହେଲା ଆମର ଶୁଭ ସଂଖ୍ୟା । ଆମେ ଚଉଦ ପୁରୁଷଙ୍କୁ ପାଣି ଦେଉଁ । ଭୁବନ ହେଲା ଚଉଦ'ଶ । ପୁଣି ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ହୋଇଯିବେ ଯେ ଏହା ସ୍ୱାଧୀନତା ପରଯାଏ ଆମକୁ ଘୋଡାଇ— ଆସିଥିଲା । ଆମ ସମ୍ବିଧାନ-ବିଧାୟକମାନେ ପ୍ରଥମେ ୧୪ଟି ମାତ୍ର ଭାଷାକୁ ସ୍ୱୀକୃତି ଦେଇଥିଲେ । ଏବେ ଦେଖନ୍ତୁ ଯେ, ସେଥିରେ ଓଲଟ ପାଲଟ ହେବାରୁ ଭାରତସାରା ଭାଷା-ସମସ୍ୟା ମୁଣ୍ଡ ଟେକିଛି । କିନ୍ତୁ ସେତେବେଳେ କ'ଣ ସେମାନେ ଆଉ ଦଶଟା ଭାଷାକୁ ସ୍ୱୀକୃତି ଦେଇ ପାରି ନ ଥାନ୍ତେ । ନା ଭାରତରେ କିଛି ଭାଷା ଉଣା ପଡିଚି ? ଶତପଥୀଏ କହିଲେ—ହଇଓ ଭାରତରେ ନାହିଁ କ'ଣ ? ବୋଇଲା ଯାହା ନାହିଁ ଭାରତେ, ତାହା ନାହିଁ ଜଗତେ ! ହେଃ !"..."କ'ଣ ଗୁଡାଏ ଅବାନ୍ତର କଥା କହୁଛନ୍ତି ?" ଗଜ ହାକି ଦେଲା ମଝିରେ । ଶତପଥୀଏ ହେଣ୍ଡାଳିଲେ

—"ଆପଣ ଅବାଚ୍ୟରେ ମୁଁ କହୁଚ ନା ତମେ କହୁଚ?"... 'ନାଇଁ ଆଜ୍ଞା ମୁଁ କହୁଚି"—ଗଜ ନରମି ଗଲା ।

ସୁବୁଦ୍ଧିଏ ମିଳାମିଶା କଲଭଳିଆ କହିଲେ—"ନାଇଁ ନାଇଁ ସମସ୍ତେ ଠିକ୍ କହୁଚ । ବୋଇଲା 'ତୁମି ନାରାୟଣ— ଆମି ନାରାୟଣ ଇଡା ସକଳ ଘଟେ ନାରାୟଣ, ଭଗବନ୍ତ ଅନାଦି କାରଣ ।" ଭାଗବତର ଏ ପଦ ବାପ କ'ଣ ପଢ଼ ?" ଗଜ ଧାଇଁକରି ମାଡବସିଲା— "ହଁ।...ମଧୁସୂଦନ ବି ସେଇଆ କହିଛନ୍ତି !"

ବୁଝିଲି ମଧୁସୂଦନ ଏ ଦେଶର ଗୁରୁ, ଉଣ୍ଣ କବି ଏବଂ ବର୍ଣ୍ଣବୋଧ ତାଙ୍କର ଏ ଜାତିକୁ ଶ୍ରେଷ୍ଠ ଅବଦାନ । ଆପଣମାନେ ଟିକଏ ତୁଳନା କରି ଦେଖିଲେ ବିସ୍ମିତ ହେବେ ଯେ, ଈଶ୍ୱର- ଚନ୍ଦ୍ର ବିଦ୍ୟାସାଗର ମଧ୍ୟ ବଙ୍ଗାଳି ଜାତିକୁ ବର୍ଣ୍ଣ ଶିଖାଇବା ଲାଗି ଏହିପରି ଏକ ଗ୍ରନ୍ଥ ଲେଖି ତା'ର ନାମ 'ବର୍ଣ୍ଣପରିଚୟ' ରଖିଥିଲେ, ମାତ୍ର ମଧୁସୂଦନ ନାମ ଦେଲେ— 'ବର୍ଣ୍ଣବୋଧ' । କାହିଁକି ସେ ଏପରି କଲେ ?

ବର୍ଣ୍ଣମାନେ କ'ଣ ? ଜାତି । ଗୀତା କହନ୍ତି—

"ଚାତୁର୍ବର୍ଣ୍ଣଂ ମୟା ସୃଷ୍ଟଂ ଗୁଣ-କର୍ମ-ବିଭାଗଶଃ"

ଏହି ଚତୁର୍ବର୍ଣ୍ଣ ଉକ୍ତ ପୁସ୍ତକକୁ ପଢିଲେ ବୋଧ ହୋଇଯିବେ । ଖାଲି ସେତିକି ନୁହେଁ ବୋଧାଶୋଧା, କି ବିଜ୍ଞ ମଧ୍ୟ ହୋଇ ପାରିବେ । ସେଥିରେ ସେ ଆମକୁ ଅକ୍ଷର ଶିଖାଇଛନ୍ତି, ଧର୍ମ ଶିଖାଇଛନ୍ତି, ଇତିହାସ, ଦର୍ଶନ ସବୁ ଶିଖାଇଛନ୍ତି ।

ବୋଇଲା—"ଚନେବନେ ନ ଗଜେନ୍ଦ୍ର,—ମୌକ୍ତିକଂ ନ ଗଜେ ଗଜେ," ସବୁ ବଣରେ ହାତୀ ନଥାନ୍ତି କି ସବୁ ହାତୀଙ୍କ କପାଳରେ ଗଜମୁକୁତା ନଥାଏ । ସେମିତି ସଭିଙ୍କଠାରେ କବିତ୍ୱ ଶକ୍ତି ନଥାଏ କି ସବୁ କବିଙ୍କର ସବୁ ପଦରେ ମର୍ମ ନଥାଏ । ପୁଣି ମର୍ମ ଥିଲେହେଁ ସମସ୍ତିଙ୍କି ତାହା ଜଣା ନଥାଏ ।" ସୁବୁଦ୍ଧି ଏ କହିବାରୁ—

ପୋଥି ପଢ଼ି ପଢ଼ି ଧୋବ ଉଡ଼େ
ମରମ ନଜାନେ କୋଇ
ମରମ ଜାନେ ଯୋଇ ବେଟା
ଅଟେ ନିରଞ୍ଜନ ସେ ହିଁ ।'

ଗଜ ତା'ର ବୃସିଂହାକୁ ଆଖି, ଓଠ ଓ ଅଙ୍ଗପ୍ରତ୍ୟଙ୍ଗରେ ଫୁଟାଇ ଦ୍ୱିଗୁଣ ପୁଲକରେ କହିଲା—'ସଦାନ୍ତମଣ୍ଡଳ, ଆପଣମାନଙ୍କୁ ମୋର ବିନମ୍ର ନିବେଦନ ଆପଣମାନେ ବର୍ଣ୍ଣବୋଧକୁ ଆଉଥରେ ଲେଖା ପଢ଼ନ୍ତୁ ଏବଂ କବିଙ୍କୁ ଏହିପରି ଭାବରେ ବୁଝାନ୍ତୁ; କିନ୍ତୁ ଭୁଲ ବୁଝନ୍ତୁ ନାହିଁ । ମୁଁ ତ କେବଳ ତାର ଗୋଟିଏ ମାତ୍ର ପଦର ୯ପ୍ରକାର ଅର୍ଥ କଲି; ଏଥିରୁ ଆହୁରି ଅନେକ ଅର୍ଥ ବାହାରିବ । ଏଥିରେ ଓଡ଼ିଶାର ମିଳିତ ମନ୍ତ୍ରୀମଣ୍ଡଳ ହେବାକଥା କବି ଲେଖିଥିଲେ, ଭାରତକୁ ପାକିସ୍ଥାନ ଆକ୍ରମଣ କରି ହାରିଯିବା ଇତ୍ୟାଦି ଯାବତୀୟ ବିଷୟ ସୂଚାଇଥିଲେ; କିନ୍ତୁ ପ୍ରକୃତ ଅବଗାହୀଙ୍କ ଅଭାବରୁ ଏସବୁ ଅବୋଧ ଅନାଲୋଚ୍ୟ ହୋଇ ରହି ଯାଉଅଛି । ମତ୍ପ୍ରଣୀତ ଅଇଲଣି ବଲ୍ଲରୀ ଏହି ନବାର୍ଥବୋଧିନୀ ଟୀକା ପ୍ରକାଶିତ ହେଲେ ଏହିଗରେ ଲୋକଙ୍କର ଧାରଣା ବଦଳିବ ବୋଲି ମୁଁ ଆଶା କରୁଛି । ଖାଲି ଏତିକି

ନୁହେଁ ଏହା ଇଂରାଜୀ ଭାଷାରେ ଅନୂଦିତ ହେଲେ କବିଙ୍କର ନୋବେଲ ପ୍ରାଇଜ୍ ପାଇବାର ବାଟ ଖୋଲିଯିବ ବୋଲି ମୋର ବିଶ୍ୱାସ । ମାତ୍ର ଏ ଦେଶର ଜ୍ଞାନର ଆଦରନାହିଁ, ପ୍ରତିଭାର ପୂଜାନାହିଁ । ତଥାପିଏ ଶତପଥୀଏ, ସ୍ୱବୁଦ୍ଧିଏ, ନନ୍ଦେ ଆଁକର ଅନେଇଛନ୍ତି; ଦ୍ୱୈତ ଶିକ୍ଷାପ୍ରଚଳନର ସଂଗଠକ ଅଧ୍ୟକ୍ଷ ଗଜେନ୍ଦ୍ର ଚଳାଇଛନ୍ତି ଓଜସ୍ୱିମ ଲକ୍ଷଣ !!



* ଝଙ୍କାର—ଜାନୁଆରୀ ୧୯୭୯ରେ ପ୍ରକାଶିତ ।

# ଭଣ୍ଡାରୀ ହାତରେ........



"ଭଣ୍ଡାରୀ ହାତରେ ପଡ଼ିଛୁ ଚୁଟି ଯେଣିକ ବୋଇଲେ ତେଣିକ ଉଠି ।" —ଢ଼ଗଟି ବହୁ ଅର୍ଥରେ ପ୍ରୟୋଗ ହୁଏ । ଭୋଟ ଦେଇ ଜିତେଇ ସାରିବା ପରେ ଲୋକପ୍ରତିନିଧିଙ୍କୁ ଛୁଗୁଲାଇବା ପାଇଁ ମଧ୍ୟ ଏ କଥା କୁହାଯାଏ । କିନ୍ତୁ ଆଜି ଛୁଇଁ କହୁଛି – ମୁଁ ଏହାକୁ ଠିକ୍ ଅର୍ଥରେ ଗ୍ରହଣ ଓ ବଖାଣ କରୁଛି ।

ଗ୍ରହଣଟା କ'ଣ କି? ରାହୁବୋଲି ଗୋଟାଏ ଜନ୍ତୁ କି ମନୁଷ୍ୟ ବା ରାକ୍ଷସ ଯାହା ହେଉ ଚନ୍ଦ୍ର ବୋଲି ଆକାଶର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଗଡୁଥିବା ଗୋଲିଆ ଉଜ୍ଜ୍ୱଳ ପଦାର୍ଥକୁ ଆଁ ବାଟେ ପୂରାଇ ତଣ୍ଟିବାଟେ ନିକାଳି ଦିଏ । ସେ' ହେଲା ଗ୍ରହଣ ।" ବଖାଣଟା ତାର ଠିକ୍ ଓଲଟା । ଭବଟାକୁ ତଣ୍ଟିବାଟେ ପୂରାଇ ଆଁ ବାଟେ ବାହାର କରିଦେବା ।

ମୋ ଭବଟା ଗୁଣ୍ଡ ଭିତରେ ଉବୁ ଟୁବୁ ଜହ୍ନଳ ଉପରକୁ ଉବୁକେଇବା ଆଗରୁ ତାର ହେଉଛି ଖପୁରି ଉପରେ ଡେଇଁଥିଲା ।

ଯାହାର ଦେହଟା (ଢାଗିର) ଖିଆ ଭଣ୍ଡାରୀ ଥିବେ ତାଙ୍କ କଥା ମୁଁ କହୁନାହିଁ । ସେମାନଙ୍କ ଦୁଆରକୁ ହୁଏତ ଶହର ଭଣ୍ଡାରୀମାନେ ମୁଠି ଯାକ ଖିଅର ଇତ୍ୟାଦି କରିବାକୁ ଡାକ ଅନୁସାରେ ଆସୁଥିବେ । କିନ୍ତୁ ଆମେ ଯେଉଁ ଶହର ଗୁଜରିଆ ବାବୁଟିଏମାନ ଅଛୁ, ପୁଣି ସହର ନାମଧେୟ ସ୍ଥାନମାନଙ୍କରେ ଥୁଆ ହୋଇଛୁ ଆମମାନଙ୍କ ଦଶା ଗାଆଣ୍ଟି ଗାଇଲେ ସରିବ କି ନାହିଁ ଦୁସର କଥା ବରଂ ବହି ବଢି ଯିବ, ଏଠେଇ ସଦା-ବେଳେ "ଦାସଙ୍କ ଉପରେ ଘୋଡ଼ା" ।

ଆମେ ବାବୁଟିମାନ ମହାନ୍ତ ବାଳ ଫାଳ ବଢିଗଲେ ଅନନ୍ୟୋପାୟ ହୋଇ ସକାଳୁ ସାଇକେଲ ଖଣ୍ଡିଏମାନ ଧରି ସାଲୁନ ନାମକ ସ୍ଥାନକୁ ଯାଉ । ସେଠାରେ କାଳୁସ୍ଥ ହୋଇ ଲାଇନରେ ଅପେକ୍ଷା କରୁ । ସବୁଆଡ଼େ ଯିବା ବେଳଇନ ଏଠାରେ କିନ୍ତୁ ଲାଇନ ଉପରେ କାମ । ପାଳି ପଇଲେ ବୋଦା ହାଣ ମୁହଁକୁ ଗଳାପର ଗୋଟାଏ ଡେଙ୍ଗା ଚଉକି ଉପରକୁ ଉଠୁ । ସେଠି କଣ୍ଟୁ ସମସ୍ତ ବାରିକ; ତାଙ୍କର ଅଫିସିଆଲ ନାମ କାରିଗର ବା ସାଲୁନ ମାଲିକ ଯାହା ହୋଇଥାଉ; ତାଙ୍କର ହୁକୁମରେ ବଡ଼ଗ ମୁଣ୍ଡଟିକୁ ଅସହାୟ ଭାବରେ ଛୁଡ଼ିଦେଉ । ତାପରେ ସେ ଶସ୍ତା ପାଣି ହୋଇ ମୁଣ୍ଡକୁ 'ଉପରକୁ ଟେକ' "ତଳକୁ କର" "କନ୍ଧରଇ କନ୍ଧ ରଖ" "ଏମିତି କର" "ସେମିତି କର' ଆଦି ବହୁବିଧ ନିର୍ଦ୍ଦେଶ ଦିଅନ୍ତୁ । ତାପରେ ଦାଢ଼ି କାଟିବା କାମଟା ଆଗରୁ ସେଫ୍ଟିରେଜରରେ ବଟାଇଦେଇ ଯାଇଥିଲେ ରକ୍ଷା । ନୋହିଲେ ସିଏବି ଗୋଟାଏ ପାଲି ।

ଏ ଯୋଜନା ଅମିତ ମହାଶୟଙ୍କ ଆଦର୍ଶ, ଏ କୁ ମୋର ହାଲ ଓର। କିନ୍ତୁ କମ୍ପିଟ କ'ଣ ? ଯେତେବେଳେ ଧ ମାସେ ବି ମାସକେ ଥରେ ଅଧିକ ନ ଗଲେ ନ ହୁଏ। କିନ୍ତୁ ସେଠାରେ ଗୋଟିଏ ଓଳି ବଢାଇ ଏ ଦଣ୍ଡ ଭୋଗିବା ବେଳେ ଭାବୁଥାଏ, ଏଣିକି ଜନ୍ମ ରହିବ ପରେ ଏଠିକି ଆସିବନି। ହାପୁ ଜଟିଆ ବାବାଜି, ତୁମେମାନେ କେତେ ଚତୁର। ଅବଧୂତ କେତେ କହୁଥାଆନ୍ତି ଲୋକେ କଥା ଶିଖିଲେ; ମୁଁ ହତଭାଗା ତୁମଠାରୁ ଏତିକି ବି ଶିଖି ପାରିଲି ନାହିଁ।

ପୁଣି ଭଗବାନଙ୍କୁ ଡାକେ—ପ୍ରଭୁ ତୁମେତ ମୋତେ ଅନେକ କଥା ଦେଇ ନାହିଁ। ଯଥା—ମୁଣ୍ଡ ଭିତରେ ବୁଦ୍ଧି ବୋଲି ଯେଉଁ ଦ୍ରବ୍ୟ ବସ୍ତୁଟି ଥାଏ, ପୁଣି କପାଳରେ ସୌଭାଗ୍ୟ ବୋଲି ତୁମର ଯେଉଁ ଅଭିଲେଖ ଥାଏ।...ଇତ୍ୟାଦି। ତେବେ ମୁଣ୍ଡରେ ଏଇ ବାଳପୁଞ୍ଜାକ କାହିଁ ଦେଲ ? ... ଯାହାତ କଲ କଲ ଏଥର ମତେ ଦୟା କରିଦିଅ। ତାହାହେଲେ ଭଣ୍ଡାରୀ ହାତରୁ ରକ୍ଷା ପାଇବି। ତାଛଡ଼ା ଗୋଟାଏ ବୋଧା ଶୋଧା ଲୋକ ଭଳିଆ ବି ଦିଶିବି। ପୁଣି ସାମନା କ୍ୟାଲେଣ୍ଡରରେ କୃଷ୍ଣଚନ୍ଦ୍ରଙ୍କ ଛବି ଦେଖେ। ଭାବେ, 'ପ୍ରଭୋ' ମୁଁ ତୁମର ଆଜଯାଏ ଯେତେ ଫଟୋ ଦେଖିଲି, କେଉଁଥିରେ ତ ତୁମର ଗାଲରେ ଟିକଏ ଦାଢ଼ି କିମ୍ବା ନାକ ତଳେ ନିଶବାକିଏ ଦେଖିଲିନି ! ତୁମେ କଣ ଖାଲି ଦେବ ଶରୀର ହୁଅ ? ସେମିତି ବି ତ ମାଲୁମ ହେଉନି। ତୁମଠାରେ ସେ ପଦାର୍ଥ ଉଠେନାହିଁ ନା କଣ ? ହେଲେ, ମୋତେ ଏ ଦଣ୍ଡ ଦେଲେ କାହିଁକି ପ୍ରଭୁ ! ମୋ ପୌରୁଷ ପଛେ ଗାଧୋଇ ଯାଉ ମୋ ମୁହଁକୁ ତମର ମୁହଁ ଭଳିଆ ଅଜାତଶ୍ମଶ୍ରୁ ଏବଂ ମୁଣ୍ଡକୁ ଶଙ୍କରାଚାର୍ଯ୍ୟଙ୍କ ମୁଣ୍ଡ

ଭୁଲିଆ ଚନ୍ଦା ବରିଦିଅ । ଆଜି ଏ ଯମ ଯନ୍ତ୍ରଣା ଦିଅନାହିଁ ! ଭଗବାନ ଶୁଣିଲେ ନାହିଁ ।

ତା' ପରେ ମୁଁ ମୋ ବାଟ ଧରିନେଲି । ଦାଢ଼ି ଓ ବାଳ ଛାଡ଼ିଲି ।

କିଏ କେତେ ପ୍ରକାରେ ପଚାରିଲେ କିଏ ଗାମୁଛା ହଟେଇବା, ଶାଳ ହଟେଇବା କାହାଣୀ ଶୁଣାଇଲେ । କିଏ ହତାଶ ପ୍ରେମିକ ବୋଲି ଅପବାଦ ଦେଲେ । କିଏ କେତେ କୁତ୍ସା ରଟନା କଲେ ! ଶେଷରେ ହିପ୍ପି ପନ୍ଥା ଧରିଲି ।

ଏକାଥରକେ ଲମ୍ବା ହୋଇ ଚଇଲେ ଛ ମାସ ସ୍କୁଲଯିବ ବଚ୍ଛର, ବାଳକ ବାବୁଙ୍କୁ ଯାଇ କହିଲା—"ବାବୁ ମୋତେ ଲମ୍ବା କରିଦିଅ ଏଣିକି ତୁମକୁ ପ୍ରତି ମାସରେ ବିରକ୍ତ ନକରି ଛ'ମାସରେ ଥରେ ବ୍ୟସ୍ତ କରିବି । ସେ ବି ସେପରି ନୁହେଁ; ଖୁର ଧରିବ ତ' ଦେବ ଝୁଣ୍ଟୁ ! ସେ ଜିଁ ଚଁ ହୋଇ ଶେଷରେ ଲମ୍ବା କରିଦେଲେ ।

ତା' ପରେ ସିଏ ଦେଖିଲି ବୃନ୍ଦିଲି । ବନ୍ଧୁ ବାନ୍ଧବମାନେ ସମ ବେଦନା ଜଣାଇଲି ପରି ମୁହଁ କରି ଅଥବା ବିସ୍ମୟରେ ନୋହିବେ ସଶ୍ରୁ ଲୋଚନରେ ପଚାରିଲେ-"କାହାର କ'ଣ ହେଲା?" ମୁଁ ହୁଏତ କେବେ କେବେ ଥଟ୍ଟାରେ କହିଲି ବାଗ୍‌ଦାଦର ସେହି ଲୋକପ୍ରସୂ କାହାଣୀ 'ଗଣ୍ଡିବ ହୋସେନ ମରିଗଲା' । ଜାଣି ନଜାଣିଲି ପରି ପ୍ରଶ୍ନ ଆସିଲା 'କେମେ କଅଁ ନଣ୍ଡାହେଲ ?' ଯୁବକ ବନ୍ଧୁମାନେ ଅପେ ଆପେ ଉତ୍ତର ଯୋଗାଡ଼ କରିନେଲେ

ସମ୍ଭାବନାତ୍ମକ ପ୍ରଶ୍ନ ପଚାରିଲେ "ଡାଣ୍ଡ୍ରଫ୍ ?! ରୂପି ହେଲା କି ? ବାଳ ଝଡ଼ୁଛି ?"...ଆଜି କଏ କେମିତି ପଚାରିଲେ-"କ'ଣ ପୂଅ-ଝିଅ ହେଲାକି ?"—ଶେଷୋକ୍ତ ପ୍ରଶ୍ନ ବଡ଼ ମର୍ମନ୍ତୁଦ । ପିଲା ଛନେ ହିନା କାହୁଁ ଉଠୁଥିଲା; ଝିଅ ହେଉଥିଲା । ଏ ଅଧା ବୟସରେ କ'ଣ ସେଗୁଡ଼ା ହେବ । କୈଫିୟତ୍ ଦେଇ ଦେଇ ଥକି ଲାଗିଲା । ଗତ୍ୟନ୍ତର ପାଇ ପାରିଲାନି ।

ଏବେ ପୁଣି ସେଇ କରୁଣା କଥା । ମାସକେ ଥରେ । କୌଣସି ଗୋଟିଏ ରବିବାର ଦିନ "ଭଣ୍ଡାରି ହାତରେ ପଡ଼ୁଛି ଚୁଟି........ ॥"



* ସ୍ୱରାଜ୍ୟ—୧୯୭୬ ସାଧାରଣତନ୍ତ୍ର ବିଶେଷାଙ୍କରେ ପ୍ରକାଶିତ ।

# କୌଶଳ



ଜଣେ ବନ୍ଧୁଙ୍କଠାରୁ ଚିଠିଟିଏ ପାଇଲି । ଚିଠି ଉପରେ ଗୋଟିଏ ଷ୍ଟାମ୍ପ ଅଛି, ଥୋଡ଼ ଟଙ୍କର ଦାମ ପଚ । ତା ତଳକୁ ଲେଖା ହୋଇଛି —“ଯୋଗଃ କର୍ମସୁ କୌଶଳମ୍” । ସାଙ୍ଗ ଜଣକ ଗୋଟିଏ ଡାକଘର କେନ୍ଦ୍ରରୁ ଲେଖିଛନ୍ତି । କଥାରେ ଅଛି, ‘ଦୁଧ ଉଛୁଳିଲେ ଚୁଲିରେ ପଡ଼େ, ମଣିଷ ଉଛୁଳିଲେ ଗାତରେ ପଶନ୍ତି ।’ କିନ୍ତୁ ଏଇ ଡାକଘର କେନ୍ଦ୍ରରୁ ଉଛୁଳିବା (ଉତ୍ତୀର୍ଣ୍ଣ ହେବା) ପିଲାଏ ଶାସନ ଗାଦିରେ ବସନ୍ତି । ଗାଦିନାସୀନ ହେବା ପରେ ସେମାନେ ଯେଉଁ ପ୍ୟାଡ଼ରେ ସରକାରୀ ଚିଠି ଲେଖିବେ, ସେଥିରେ ଅଶୋକ ସ୍ତମ୍ଭର ଅଗ୍ରଭାଗ-ଷ୍ଟାମ୍ପ ତଳେ ଲେଖା ହୋଇଥିବ, ‘ସତ୍ୟମେବ ଜୟତେ’ । ତେବେ ସତ୍ୟ ସହିତ କୌଶଳ କଥାଟା ଗୋଟେଇ ମିଶେଇ ଭାବିଲା ବେଳକୁ ଆପାତତଃ କେମିତି ଅଡ଼ୁଆ ଅଡ଼ୁଆ ଲାଗୁଛି । ମେଳକ ଖୁଣ୍ଟାଇବା କଥା ବୁଦ୍ଧିଆଳ ପାଠକଙ୍କ ମୁଣ୍ଡରେ ଲଦି ଦିଆଯାଉ ।

ପିଲାଦିନେ ‘ବଗୁଲା ଗାଣ୍ଡ’ ଗାଥାରେ ବଗୁଲା ଓ ବ୍ୟାଘ୍ରର ସନ୍ଧ୍ୟା କଷ୍ଟ କଳ ପ୍ରସଙ୍ଗ ଶୁଣିଛୁ । ସେକଥା ଯେ ଆମେ ଏକା ଶୁଣି-

ବାକୁ ଜନମ ହୋଇଥିଲୁ ତାହା ନୁହେ । ଆମର ପଢ଼ାଳମାନେ ଏ ଶୁଣିଥିବେ । ସେଥିର ଅନ୍ତିମ ପରିଣତି ହେଲା, ସତ୍ୟମେବ ଜୟତେ । ଟୋକା ବାଘଟା ବଜ୍ରାକୁ ନଖାଇ ଛାଡ଼ିଦେଲା ଏବଂ ମଲା । କାଇଁକନା ବଜ୍ରା ସତ୍ୟରଖି ବାଘମୁହଁକୁ ପୁଣି ଲେଉଟି ଆସିଲା ।

କୌଶଳ ବିଷୟରେ ମଧ୍ୟ ଆମେ ଫକୀର ସେନାପତିଙ୍କ ଆତ୍ମଜୀବନୀରେ ପଢ଼ିଛେ । ସେନାପତିଏ କିମିତି ମେଳିଆ ଓ ତାଙ୍କ ନେତା ଧରଣୀଧରଙ୍କ ହାବୁଡ଼ରୁ ଖସି ଆସିଲେ ଓ ମେଳକୁ ଫାଶର ଫାଟେଇ ଦେଲେ ସେ କଥା ଓଡ଼ିଆ ମାତ୍ରେ ଜାଣନ୍ତି ।

ସତ୍ୟର ଜୟ ପରାଜୟ ବିଷୟକୁ ବାଦ ନେଇଯାଉ । କୌଶଳ ବିଷୟଟା କିନ୍ତୁ ଆମେ ଅଙ୍ଗେ ଲିଭେଉଛୁ । କୌଶଳ, ଯାହାକୁ ଇଂରାଜୀରେ ଟ୍ୟାକ୍ଟ କୁହାଯାଏ । ତା କଥମତି ନଜାଣେ କିଏ ? କିନ୍ତୁ ସତ୍ୟସଙ୍ଗେ ଇଆର ବାନ୍ଧଯୋଡ଼କ ପଡ଼ିବାଟା କେମିତି କେମିତି ଲାଗୁଛି । ଆଖି ମିଟିକା ମାରିବା କଥାଟା କାହାରି ଅଜଣା ନୁହଁ । ସତ୍ୟକୁ ବି ଆଖି ମିଟିକା ମରିଯାଏ । ପାଞ୍ଚଭାଇ ପାଣ୍ଡବ ହୁଅନ୍ତି । ଭିନେ ଭିନେ ପ୍ରସଙ୍ଗ କୋଉଠି କରେଖାଯାଏ ଯାଏ । ପୁଣି ଦଶଆଡ଼ୁ ଦଶଲୋକ ମିଶି ସମବାୟ କମ୍ପାନୀ ବି ଖୋଲନ୍ତି, ଏମିତି ବି ହୁଏ । ତେଣୁ ସତ୍ୟ ଆଖି ମିଟିକାମାରି କୌଶଳ ସହିତ ତାର ମେଳକ ଶୁଝାଇବା ଏହାକୁ ଅସମ୍ଭବ ନୁହେଁ ।

ତେବେ କଥାଏ କହିବି—ଯୁଧିଷ୍ଠିର ବାବୁ କୁଆଡ଼େ ସତ୍ୟବାନ୍ ହୋଇଥିଲେ ବୋଲି ମହାଭାରତରେ ଲେଖାହୋଇଛି । ପୁଣି ତାଙ୍କ ମାମୁଁ ପୁଅଭାଇ ଶ୍ରୀକୃଷ୍ଣ ମହାଶୟ ଜଣେ ଓସ୍ତାଦ୍ କୌଶଳୀ

ଥିଲେ । ଯୁଦ୍ଧ ଶେଷରେ ପାଣ୍ଡବମାନେ ସତ୍ୟରେ ଥିଲେ ବୋଲି ଶ୍ରୀକୃଷ୍ଣ ତାଙ୍କ ପକ୍ଷ ନେଇ କୁରୁ ପାଣ୍ଡବ ଯୁଦ୍ଧରେ ପାଣ୍ଡବମାନଙ୍କୁ ଜିତେଇ ଦେଲେ ବୋଲି କୁହାଯାଏ । କିନ୍ତୁ ଶ୍ରୀକୃଷ୍ଣ ଯାହାଙ୍କ ପକ୍ଷରେ ଥିଲେ, ସେମିତି ଜିତେଇଲେ ସେ ପ୍ରସଙ୍ଗ କାହାରିକୁ ଅଛପା ନୁହେଁ । ସେ ଜୟଦ୍ରଥକୁ ଉଦ୍ଧାର କରି ଓ ଅର୍ଜୁନଙ୍କ ସଙ୍ଗ ଛଇଛାଇ ରାଧାଧର ପ୍ରସଙ୍ଗ ପକାଇବେ ବୋଲି କେଉଁଥି ପାଇଁ ପାଣ୍ଡବଙ୍କ ସାଙ୍ଗ ହୋଇଥିଲେ । ସେକଥା ଆମେ କହୁ ନାହୁଁ । ତେବେ ଦ୍ରୌପଦୀଙ୍କ ପ୍ରତି ତାଙ୍କର ଟିକେ ଦୁର୍ବଳତା ଥିଲ ବୋଲି ଶୁଣାଯାଏ । ଛାଡ଼ ସେସବୁ ବାଜେ କଥା ।

ତେବେ ଯୁଧିଷ୍ଠିରଙ୍କ ଭଳିଆ ଥିଲେ ବି ଅଶ୍ୱତ୍ଥାମା ହତ ନରେବା ଗୁଞ୍ଜରେବା ବୋଲି କହି ବାପର ଦ୍ରୋଣଙ୍କ ପରି ସରଳ ବିଶ୍ୱାସୀ ଗୁରୁଙ୍କୁ ମରେଇ ଦେଇଥିଲେ । ଏହା କୌଶଳ ଓ ସତ୍ୟର ଗୋଟାଏ ମେଳକ ପ୍ରସଙ୍ଗ । ଏ ମିଶାଣରେ କାହା ଭାଗଟା କେତେ ଲୋକେ କହିବେ । ଲେମ୍ବୁ ପଣାରେ ଚିନି ଦିଆନଥାଏ ତା ନୁହେଁ । ତେବେ ସେ ଲେମ୍ବୁ ପଣା । ତେଣୁ ଏକୁ କୌଶଳ ବା ସତ୍ୟ କୌଣସି ଗୋଟିଏ ନାଁ ଦିଆଯାଇପାରେ । କିନ୍ତୁ ସତ୍ୟ ଓ କୌଶଳର ଆପୋଷ ବୋଲି କଣ କୁହାଯିବ ?

ପୁଣି ଅନେକ ସମୟରେ ନୀରବ ରହିବା ମଧ୍ୟ ଏକ କୌଶଳ ବୋଲି କୁହାଯାଏ । ଇଶପ୍ କାହାଣୀ ମାଳାରେ ଗୋଟିଏ କଥା ଅଛି । ବେଙ୍ଗାବାଘ ଥରେ ଠେକୁଆକୁ ଡାକି ପଚାରିଲା — ମୋ ଦେହଟା ଭାରି ଗନ୍ଧଉଛି; ଠେକୁଆ ବାପର କ'ଣ କୌଶଳ ଜାଣେ ? ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲା — ହଁ ଆଜ୍ଞା

ଘାସ ଖାଉଅଛୁ । ବାଘ ପଚାରିଲେ—କହିଲେ; "ତୁ ଘାସ କହୁନେ-
ଓ୍ୱାଲା । ଏଗେରେ ମୁଁ ଗଛଅଛୁ ? ତୁ ତାହାଙ୍କ ମତରେ ଗଛଆ
ହୋଇ ଯାଉନୁ ? ମୁଁ ତୋତେ ଖାଇଦେବି ।" ବାଦର ଠେକୁଆ ବାଘ
ଦେହକୁ ଗଲା । ତା ପରେ ସେହି ବାଘ ହରିଣକୁ ଡାକି ପଚାରିଲା-
ମୁଁ ଗଛଅଛୁ ନା ବାଘୁଛୁ । ହରିଣ ଠେକୁଆର ଦଶା ଜାଣେ ।
ସେ ଅଡ଼ୁଆ ଭିତରକୁ ପଶି ନଯାଇ କହିଲା ଆଜ୍ଞା ଆପଣ ବାଘୁଛନ୍ତି ।
ହେଲାବାଘ କହିଲା—ତୁହା ଘାସ ଖସାମଣ୍ଡଆ । ହଇରେ, ମୁଁ
ବାଘୁଛି ? ତାତେ ମୁଁ ଖାଇଦେବି । ତୁ ତାଙ୍କର ମତରେ ଖସାମଣ୍ଡ
କଲୁ ? ମତେ ବୋକା ପାଇଛୁ ?" ତା ପରେ ହା—କୁ ।
ହରିଣର ଦଶା ତାଙ୍କ । ତାହା ପରେ ପାଳି ପଡ଼ିଲା କୋକିର ।
ସେ ମହା ଗୁଳକ, ଯେଉଁ ହାକ କୌଶଳର ପ୍ରଧାନ କାର୍ଯ୍ୟ ।
ସେ କହିଲା ଆଜ୍ଞା, ଧର୍ମାବତାର; ମୋତେ ଥଣ୍ଡା ହୋଇଛି । ତେଣୁ
ଗନ୍ଧ ବାସ୍ନା କିଛି ବାରି ପାରୁନି ।" ଇଏ ଯେଉଁ କୌଶଳରେ
ଖସିଯିବା ହେଲା, ଏଥିରେ କ'ଣ ମିଛ ନାହିଁ ? କୋକିକୁ ଥଣ୍ଡା
ହୋଇଥିଲା ବୋଲି କ'ଣ ଡାକ୍ତର ମାନେ କରି କହିଥିଲେ—ନା
ତା'ର ଇଏଁଠା ସତବୋଲି କିଛି ପ୍ରମାଣ ଅଛି ? ସେ ମିଛ
କଥାଟାଏ କହି ଖସିଗଲା ପରେ ଜଳଜଳ ହୋଇ ଦିଶୁ
ଛାହିଁକ ?

ସତ୍ୟ ବୋଇଲେ ଖାଲି କଥାର ସତ୍ୟନୁହେଁ । ଆଚରଣରେ
ସତ୍ ବା ସାଧୁ ରହିବ । ତେବେ ଅନ୍ୟାଙ୍କ ଭଲଆ ନୁହେଁ ।
ଏଇଆ ବୁଦ୍ଧିଆର ଲୋକେ ଘବୁଥିବେ । "ସତ୍ କହିବ, ଅପ୍ରିୟ
ସତ କହିବ ନାହିଁ"-ଏମିତି ଗୋଟାଏ କଥା ଫମ୍ପୁଲ ତା' ଭିତରୁ
ବାହାର କରିବାକୁ ହେବ । ସତଆ ହେବ; କୌଶଳୀ ହେବ,
କିନ୍ତୁ କୌଶଳୀ ହେବାକୁ ଯାଇ ଫଲୁଆ ହେବ ନାହିଁ ।

କନ୍ତୁ କଥାଟା ଠିକ୍ ଏଇଆ ନୁହେଁ । ଚ୍‌ବାଟରେ ଫଗଡ ଦେନ ବସ୍ତୁରଲେ, ବସ୍ତୁପୁଟି ଶ୍ରୀମଦ୍‌ଭଗବତ ଗୀତାର ୨ୟ ଅଧ୍ୟାୟର ୫୦ ନମ୍ବର ଶ୍ଲୋକ । କୃଷ୍ଣଚନ୍ଦ୍ର ବୁଝାଇଛନ୍ତି – ସିଦ୍ଧି ଅସିଦ୍ଧିକୁ ସମାନ ମଣି, ଫଳ ପ୍ରାପ୍ତି ପାଇଁ କାଉଳ ନହୋଇ ଯୋଗପାଇଁ ଯୋଗକର । କର୍ମରେ ଅସଲ୍ କୌଶଳ ହେଲା ଯୋଗ । ଇଂରାଜୀରେ କହିଲେ--"yoga is the true skill in work" ଏଇ କାମ କରିବାର ସ୍କିଲ୍ ବା କୌଶଳ ଟା ସଂସାରର କୁଶଳୀ କରିତ୍କର୍ମା ଲୋକେ, ମହାପାତ୍ର ମାନେ ଜାଣନ୍ତି । ତଟସ୍ଥ ଜଳକା ମାନଙ୍କ ପାଇଁ···" "ଦୁର୍ଗମ ପଥ ଏ ଭଜନ······"



# ସିନ୍ଦୂର

ସିନ୍ଦୂର ମାଇପେ ଲଗାନ୍ତି । ସଧବାର ଲକ୍ଷଣ ସିନ୍ଦୂର । ଟାଳଦେଲେ କହନ୍ତି—"ତୋ ମଥାର ସିନ୍ଦୂର ନିଭିଯାଉ" । ଆଶୀର୍ବାଦ ଦେଲେ— "ତୋ ହାତ ସିନ୍ଦୂର ବଜର ହେଉ ।" ଠାକୁରାଣୀ ସିନ୍ଦୂର ଲଗାନ୍ତି, ଠାକୁରେ ଚନ୍ଦନ ଲଗି ହୁଅନ୍ତି । କିନ୍ତୁ ପାଇକ ମାନେ ବି ତ ସିନ୍ଦୂର ଲଗାନ୍ତି । ମାଇପଙ୍କ କପାଳରୁ ପାଇକଙ୍କ ଭାଲ ପଟକୁ ସେ ଗଲା କିମିତି ? ପୁଣି ନାରୀ ଅବଳା, ଲଳନା ଘରଣୀ, ଯିଏ ସକେଇ କାନ୍ଦେ—"ବଡ଼' ସ୍ୱାମୀ ନ ଥିଅ ଜନମ ଲୋ ବୋଉ । ତା' ମଥାର କଳଙ୍କ ଦୂର୍ଦ୍ଧର୍ଷ ପୁରୁଷ ପୁଣି ଯୁଦ୍ଧଭୂମିରେ ପ୍ରଚଣ୍ଡ ବୀରତ୍ୱ ଦେଖାଉଥିବା 'କଳିଯୁଗ ଷଣ୍ଢା, ଝାଡ଼ ଝାଙ୍ଗସା ଟଣ୍ଡା' ଯାହାଙ୍କ ମଥାରେ 'ଖୋଲସା ପାଗ, ଦେଇଶ ନରବ୍ ଅ.ଗ' ତାଙ୍କ କପାଳକୁ ଗଲା ବା କାହିଁକି ?

କଥାଏ ଅଛି—ଥରେ କ'ଣ ହେଲା କି ରାମ ସୀତା ବନବାସ ବେଳେ ଉଦେଗିରି ପର୍ବତରେ ବସିଥିଲେ । ସେଇଠି ଏକ କାଣ୍ଡ ଘଟିଲା—

"ସୀତାଙ୍କ ଶୃଙ୍ଗାରରୁ ଶ୍ରେଷ୍ଠ ଜଣେ
ପାଷାଣେ ମଣ୍ଡନେ ନଲ ଲାଗିଲା ଲକ୍ଷଣି
ତାହା ଦେଖି ଆଶ୍ଚର୍ଯ୍ୟ ହୋଇଲେ ରଘୁନାଥ
ଗୃହଭାଗ କରି ତାହା ବାଣ୍ଟିଲେ ତ୍ୱରିତ
ଭାଗେ ହନୁମାନଙ୍କୁ ଦେଲେ
ଭାଗେ ଚଣ୍ଡି ଗୁଣ୍ଡାଙ୍କୁ ଦେଲେ
ଭାଗେ ଷଣ୍ଢିକୁ ଦେଲେ ।"

(ନକୁଳ ଟାଙ୍ଗିଙ୍କ ଗୀତ)

ସେଥିପାଇଁ ପାଇକ କହେ—"ଶ୍ରୀରାମ ସ୍ମରଣ ସିନ୍ଦୂର ଶିର ଭୋଗାଇଲି ଗଲରେ ।" ସିଏ ଯାହାହେଉ ଜନକ ଦେଲା ସୀତାଙ୍କର; ମାନେ ନାରୀର । ଅର୍ଥାତ ଉତ୍ସାହର ଉତ୍ସ ନାରୀ ।

ଏତେବଡ ରାମାୟଣ ଯୁଦ୍ଧ—ଉତ୍ସ ହେଲା ନାରୀ, ମହାଭାରତ ଯୁଦ୍ଧପଛରେ ସତ୍ତ୍ୱ ତାହାହିଁ ଯେତେ ନାହିଁ ଦ୍ରୌପଦୀଙ୍କ ଯୁଡ଼ା ବାନ୍ଧିବା ନେଇ ବଡ ହୋଇ ଦିଶେ । ଶେଷରେ ଯୁଦ୍ଧର ଆରମ୍ଭଟା ବ ଦର୍ଶନ କରିଲେ ସଂଯୁକ୍ତା ହରଣରୁ ଆରମ୍ଭ । ପୁରୁଷ ହୃଦୟର ସିନ୍ଦୂର ଟୋପା ହୋଇ ତାଙ୍କ ମୁଣ୍ଡରେ ଲାଗେ, ଦ ହ ଭ ପାଣି କାଚ ରୂପେ ଝୁମୁରୁ ଝୁମୁରୁ ହୁଏ········ଆହା ବିଚରା ପୁରୁଷ ! ସିଏ ହୁଏତ ପୋଛିଦେଲେ ଲିଭିଯିବ, ଛେଚିଦେଲେ ଭାଙ୍ଗିଯିବ ।

ଏଇ ନାରୀ ପାଇଁ ଇନ୍ଦ୍ର ସହସ୍ରାକ୍ଷ ? ଲଙ୍କା ଧ୍ୱଂସ; ନେପୋଲିୟନ ପରାସ୍ତ, ପ୍ରୋଫୁମ୍ ବଦ୍‌ନାମ୍ ।"ନାରୀଏ କ ନକଲେ ରୁଧିରେ ବାନ୍ଧିଲେ ଜୁଡ଼ା ।" ତଥାପି ପୁରୁଷକୁ ନାରୀ ଉତ୍ସାହିତ

ଢରେ । କାଳିଦାସ ନାରୀପାଇଁ କବି । ଶିବ ଭକ୍ତଙ୍କ ପାଇଁ ଅମର । ବସ୍ତୁ ଲକ୍ଷ୍ମୀଧର । ଯାହାହେଲେ ବି ନାରୀ ଯେମିତି ପୁରୁଷକୁ ମୁଣ୍ଡରେ ସିନ୍ଦୁର କରି ପିନ୍ଧେ, ପୁରୁଷ ସେମିତି ସ୍ତ୍ରୀର ପ୍ରଶଂସାକରୁଟେ କିଛି ବ୍ୟବହାର କରେ କି ? ପକେଟରେ 'ଫରଗେଟ୍ ମି ନଟ୍' ରୁମାଲ, ହାତରେ ସ୍ତ୍ରୀଙ୍କର ଲେଡ଼ିଜ୍‌ଓ୍ୱାଚ, ଅଥବା ପରଆଙ୍ଗୁଠିରେ ଟ୍ରେୟଡ଼ିଙ୍ଗ୍ ରିଙ୍ଗ୍ ନେକଲେସ୍ ବା ପିନ୍ଧନ୍ତି ? ସେଥିପାଇଁ ବାଧ୍ୟ ବାଧ୍ୟକତା କେଉଁ ଶାସ୍ତ୍ରରେ ଅଛି ? ମାଇଚିଆ ମାନଙ୍କ କଥା ଛାଡ଼ନ୍ତୁ । ସେମାନେ ତ ନାରୀ ନାରୀସ୍ୱଭ, ନାସ୍ତ୍ର ଚେତେହେବ ନାରୀ ମନ ନେଇ ବୁଲନ୍ତି । ତାଙ୍କୁ କଅଁ ସ୍ୱଭାବକୁ ଆଣିବା ? ଅସଲି ମରଦଙ୍କ କଥା ଶବ୍ଦରକୁ ଆସୁ ।

ଯେତେ ଖ୍ୱେବଲ ମୂର୍ତ୍ତି କୁଣ୍ଡାଇଲେ-ଉଁ-ଚୁଁ ହେଲେ କନ୍ତୁ ତ ପଇଠ୍ନ । କେତେ କାହାକୁ ପଚ୍ଚରିଲି । ଜଣଙ୍କୁ ଛିଗୁଳେଇ କରି ପଚ୍ଚରିଲି—ହଠାଏ ତମ ଘଇତା ମାଇପଙ୍କର ବନ୍ଦୁ ନାଇଁ ନା କ'ଣ ? କାଇଁକି ତମକୁ ସିଏ ବାସେଲ ପରି ମାଲୁମ ପଡ଼ୁନାହିଁକି । ପୁରୁଷ ପୁଙ୍ଗବ ଚହିଁକି ଉଠି କହିଲେ ତମ ମୁଣ୍ଡ ବିଗିଡ଼ି ଗଲାଣିକି ହେ ! ଭୂତ ଭୁଡ଼ି କଥା କହୁଛ ଯେ ? ମୁଁ ଟିକିଏ ସଜାଡ଼ି ସୁଜାଡ଼ି ହୋଇ ରହିଲି, ଜାଣିକି ମୋ କଥାଟା କଣ ଫାଉନାହିଁ କି ? ଆଜ ମୁରୁଖ ଆଖିକି ଯାହା ଦୁଶିଲା କହିଲୁ ? ତେମେ ଆପଣେ ଏମେତନ୍ତି ରାଗ ହେଉଛ କାହିଁକି ? ସେ ଥଣ୍ଡା ପଇଲେ···କହିଲେ "ତମ ମତଲବ କ'ଣ ?"

ମୁଁ ବୋଇଲି ତେମେ ଆପଣେ ତମ ଫେମିଲିକି ଭାରି ଭଲପାଅ ବୋଲି ଆମେ ଜାଣୁ । କିନ୍ତୁ ତମ ଫେମିଲି ଯେମିତି

ତମକୁ ହାତରକାଠି ମୁଣ୍ଡରେ ସିନ୍ଦୂର କରି ପିନ୍ଧିଛନ୍ତି । ତମେ ଷାଙ୍କୁଡ ସେମିତି ପିନ୍ଧିବି ନ ? ଏଥିକୁ ଆମେ କଣ ବୁଝିବ୍ କହିବା ହେଲେ ? ପୁରୁଷ ପୂର୍ବକ ଫେଁ କରି ହସି ଦେଲେ । ମୋ ମନରେ ଟିକିଏ କୁତୁହଳ ଉଠିଲା···କଣ ଠାଏ କହିବେ ପରା !

ସିଏ କହିଲେ ହଉ ଓ ଆମେ ପୁରୁଷ ପିଲା, ସ୍ତ୍ରୀ ଚିହ୍ନଂକୁ ମୁହିଁ ଦଉନାହିଁ । [ସେମାନେ ଭେଟେଇ ହୁଅନ୍ତି । କାହିଁକି ନା ତାଙ୍କର ଅନୁରକ୍ତି ଦେଖେଇ ହେବା କଥା । ତା' ଛଡ଼ା ହିଞ୍ଜଡ଼ା ଲୋକେ କ'ଣ ନାହିଁ କ'ଣ ବୋଲି କହିବେ······ନ ଜାଣିଲା ଲୋକେ ବାହାଘର ପ୍ରସ୍ତାବ ଠାଏ ପକାଇ ଦେବେ କି କୋଉଠି କ'ଣଠାଏ ହେବ ଏଥିପାଇଁ ସେମାନେ-ସିନ୍ଦୂର କାଚ ପିନ୍ଧନ୍ତି କି କଣ । ହେଲେ ସେ ସୁନ୍ଦରର ହୃଦୟର କଥା ଜଣେଇ ଜଣା କିନ୍ତୁ ଆମେ କହୁ ନ କହୁ ବୁଝେଁ । ତେବେ କଣ କରୁ ?" ମୁଁ ଆଁ କରି ଆନାଇଲି, ବ୍ରହ୍ମାଙ୍କ ମୁହଁରୁ ବେଦ ଚଳିଲା କି ଆଉ ?

ସେ କହି ଚାଲିଲେ······ତାଙ୍କର ନାମ(ସ୍ତ୍ରୀ ନାମ)କୁ ଆମେ ତୁଣ୍ଡରେ ଜପୁ । ଅର୍ଥାତ୍ କଥାପ୍ରସଙ୍ଗରେ କହୁ, ତାଙ୍କ ଗୁଣଗାନ କରୁ । ଅବଶ୍ୟ କେତେ କେତେ ପୁରୁଷ, ବାମନଧରି ଭଏ, ଅମୁକ ମା' ଆମର ସିଏ······ଇମିତି କହୁ କହନ୍ତି । ଯାହେଲେ ବି ସ୍ତ୍ରୀଙ୍କ ଗୁଣଗାନ କରିବା ସ୍ୱାମୀର ଧର୍ମ । ଆଉ ତେମେତ ଜାଣ "ଗୁଣ ଦୋଷ ଦୋଷ ଜ୍ଞାନ ଓହାଇଲା ।"

ତୁଣ୍ଡ ତଳକୁ କଣ୍ଠ ଏବଂ ତା' ଉପରକୁ ମୁଣ୍ଡ ।କି—ମନରେ ସଦାବେଳେ ତାଙ୍କର ଅନୁରାଗ କଥାଗୁଡ଼ ପୂରେଇ

ଅଜ……କଣ୍ଠରେ କଣ୍ଠସ୍ଥ କରି ରଖିଥାଉ । ଯଥା ଆମ ଭିଏ ଅମୁକ ଦରବାରିକୁ ଭଲ ପାଆନ୍ତି…… ସେଇଟିରେ ତାଙ୍କର ଶରଧା ନବଣୀ । କେଉଁଠି କେମିତି ଦେଖିଲେ ସେଇଟି ମାନଙ୍କୁ ପାକେଟରେ ପୂରେଇ ଆଣୁ । ନାଁ କଅଣ କହୁଛ ? ମୁଁ ମୁଣ୍ଡ ଝୁଂକେଇଲି–ହଁ ନୁହେଁ ଆଉ କ'ଣ ?

ପିଏ ଓଗାଳୁଆନ୍ତି—କଣ୍ଠ ତଳକୁ କ'ଣ? ହୃଦୟ… ଗୁଡ, ଗୁଡ; କ'ଣ କହୁଛ ? ହଁ ତାଙ୍କ ପ୍ରତି ପ୍ରୀତି, ସ୍ନେହ ଅନୁରାଗ, ଭକ୍ତି, ଚାଡି, ସବୁ କିଛି ଆମେ ତାହା ଭିତରେ ଗୁଡ଼ କରି ରଖିଥାଉ । ଏ କଥା କେବଳ ନିଶ୍ୱାସ ପ୍ରଶ୍ୱାସ ରୂପେ ଯାଆ ଆସ କରୁଥିବା ପବନ ଅବା ଜାଣୁଥିବ କି ନାହିଁ । କିନ୍ତୁ ପିଏ ଜାଣନ୍ତି । ଯେମିତି ମନ୍ଦର ପର୍ବତକୁ ଖୁଆ, ବାସୁକିକୁ ଦଉଡ଼ି କରି ଦେବ ଦାନବ ଗଣ ସମୁଦ୍ରକୁ ମନ୍ଥି ପକାଇଲେ; ଆମେ ସେମିତି ମୁଣ୍ଡକୁ ଖୁଆ କାଉଁରି ବାଉଳକୁ ଦଉଡ଼ି କରି ଆମ ହୃଦୟ ସାଗରକୁ ମନ୍ଥି ପକାଉ । ସେଥିରୁ ଯେଉଁ ଅନୁରାଗର ଲହୁଣୀ ବାହାରେ ତାକୁ ମୁହଁରେ ନେଇ ଢୋଇ ବାହାରକୁ ଯୋକର ଭଳିଆ ଦିଶିଲେ ବି ତାଙ୍କୁ ଖୁବ ଭଲ ଦିଶୁ । ଭିଏ ଗଲ ହୃଦୟ……ତା' ତଳକୁ କ'ଣ, ପେଟ । ଅନ୍ତଲି ଦେଉଳ ଖାଦ୍ୟବା ହେଉ ଆମର ସେଇ ପ୍ରିୟତମ ପେଟଟି ତାଙ୍କର ପାଇଁ । ପିଏ ଯାହା ହଜମ କରିଦେବେ ଭଲ ନାଗୁ ନ ଲାଗୁ……ଲୁଣିଆ ଦରଖିଆ ଯାହାହେଉ ସବୁ ଆଦରରେ ଏଇ ପେଟ ଭିତରେ ରଖିବାକୁ ହୁଏ । …ତା' ପରେ ଆଉ ବା କ'ଣ କହିବା ? ଗୁଡ଼—ସେଇଠୁ ଅଛନ୍ତି ଗୋଡ଼ । ଏଇ ଗୋଡ଼ରେ ଆମେ ତାଙ୍କର ପାଇଁ ଧାଁ । ଧପଡ଼ ଯେତେକରୁ ଆଉ କାହାପାଇଁ

କରୁ କି ? ତମେ କ'ଣ କରୁଥିବ କି ନାହିଁ କେଜାଣି—ମୁଁ କରେନି ! ତେବେ ଦେଖ ଡାକ୍ତରଙ୍କ ଟେଳପାଯାଏ ସବୁ ତାଙ୍କର ଘରେ, ଅଭାବ···ଶ୍ରୀହୀନ୍ୟର୍ଥ ଲଟିଥାଏ । ।ତ ନହେଲେ ମଥା ସିନ୍ଦୂର ହାତର କାଚ ଏତେ ଯତ୍ନରେ ସାଜୁ ଥାନ୍ତା କି ? ଘବଲ-ଘବଲ ।"

ମୋ ମୁଣ୍ଡରେ ଚେତନା ପଶିଲା । ପାଇଗଲି । ଦେ ମାଇଲି ଏକ ଇଞ୍ଜରେକ୍‌କାଢ଼ଆଁ !

— ୨ —

ଏଥିରେ ପୁଣି ଗୋଟିଏ କାହାଣୀ ଅଛି । ଥରେ ଜଣେ ଭଦ୍ର ମହିଳା ସିନ୍ଦୂର ପିନ୍ଧା ସମ୍ପର୍କେ କହିଥିଲେ ; ସମ୍ପର୍କେ ଝିଅଁ ରଖିବେ କୋ ? ନାଇଁ, କଥାଟା ଦୋଷର । ଢ଼ଗ ଅଛି—

ନଈରେ ବାଳିଆ ଚହଟିଲା,
କଜଳ ସିନ୍ଦୂର ନ ଅଟେ ରଣ୍ଡି
ପୁଣି ଲୁଖିଆ ନେଉଟିଲା ।

ରଣ୍ଡି ବା ବିଧବା ମାନେ ସିନ୍ଦୂର ନଗାନ୍ତି ନାହିଁ ; ସଧବା ମାନଙ୍କର ଏକଥା ହେଲା ମନୋପଳ । ସ୍ୱାମୀ ଝାଡ଼ାରେ ପ୍ରାଣ ହରାଇଥିବା ଖବର ପାଇ ଏଇ ଏଇ ଡରର ମାନଂକୁ ବରଜୁଥିବା ମାଗଏ ପୁଣି ସ୍ୱାମୀ ଫେରଆସିବା ଜାଣିଲେ······ବ୍ୟାପାରର ପୁନରାବୃତ୍ତି କରୁଥିବେ । ହେଲେ ଆଜିକାଲି ଅନେକ ମାଇପେ ତ ଫେସନରେ ସେଗୁଡ଼ା ଛାଡ଼ି ଦେଲେଣି । କାରଣ ଏଇ ସିନ୍ଦୂର ଦେବା ଛାଡ଼ିଦେବାଟାଙ୍କ ତାଙ୍କୁ ମୂଳର ବଶୂଛି ।

ପୁରୁଷ ପିଲ କଳଯୁଗ ଦେଖ୍ସା···ଝାଡ଼ ପାଉଶା ଖଣ୍ଡାଠାରୁ ସିନ୍ଦୁର କଲ ଉଠିଗଲଣି । କାରଣ ତାଙ୍କର ଆଉ ବୀରତ୍ତ ନାହିଁ···ଦର୍ପ ନାହିଁ । ବୀରପାଇଁ ଯାହା ସୁନ୍ଦର—ରାଜ୍ୟ ଜୟ, କ୍ଷାତ୍ର ତେଜ ସେ ସବୁ ନାହିଁ··· ତେବେ ସୁନ୍ଦର କଲି ବା ରହନ୍ତା କାହିଁକି ? କିନ୍ତୁ ନାରୀଙ୍କ ଠାରୁ ତ ନାରୀଲୁ (ନାରୀ ଏଠାରେ ସ୍ତ୍ରୀ ଅର୍ଥରେ ଖା'ସେ କହୁଛି) ପାଇଁ ଯାହା ଜଗତରେ ସୁନ୍ଦର ସେସବୁଗୁଡ଼ାକ ଯାଇନି, ତେବେ ଆପଣା କଲକୁ ଭଲାଇ କାଁ ?

ଆମେ କହୁଁ ଯେପରି ନାରୀମାନଂକ ମୁଣ୍ଡରୁ (ଅର୍ଥାତ୍ ଶ୍ରୀମ ଝାଳକ୍ ଆମି) କଳଯୁଗ ହଣ୍ଣି ପୁରୁଷ ପୁଙ୍ଗବ ମାନଂକ ଭାଗରେ ପଡ଼ିଥିଲା ବା ପ୍ରେରଣା ଦେଉଥିଲା କିମ୍ବା ନାରୀ ଯୁଦ୍ଧ କ୍ଷେତ୍ରକୁ ସ୍ୱାମୀଙ୍କୁ ବିଦାୟ ଦେଲାବେଳକୁ ଯେପରି ସିନ୍ଦୂର ପିନ୍ଧାଇ ଦେଇ ସେଇ ପରମ୍ପରାର ସ୍ମରଣ କରାଉଥିଲ ଆଜି ବି ସେପରି କରୁ । ସିନ୍ଦୂର ନାରୀର ସତୀତ୍ୱ, ପବିତ୍ରତା, ସ୍ୱାମୀ ଅନୁରାଗର ସ୍ମାରକୀ ହୋଇ ରହିବା ସଂଗେ ସଂଗେ ସେଇ ଭଲ ପଦରେ ଥାଇ ପୁରୁଷକୁ ପୌରୁଷର ସାଧନାରେ ପ୍ରୋତ୍ସାହିତ କରୁ । 'ଯୁବତୀଏ ସଦା ହୋଇଥାନ୍ତି ସିନା ବୀର ପ୍ରତି ଅନୁକୂଳ' ଭାବ ବଜାୟ ରହୁ । ସ୍ତ୍ରୀର ସିନ୍ଦୂର ପୁରୁଷର ବାହୁରେ ବଳ ସଂଚାର କରୁ । ଆମ୍ଭରେ ପ୍ରତ୍ୟୟ ଆଣିଦେଉ ।"

ଆମର ଏ ପ୍ରସ୍ତାବ ସବୁଗୁଡ଼ାକ କ'ଣ ଅଘଟଣ, ଅଡ଼ୁଆ, ଅଯଥା, ଅବାନ୍ତର ଲାଗୁଛି ?

# ନିଦ୍ରାଦେବୀ



କୋଟିଲି ମୂଳରୁ ଆରମ୍ଭ କରି ବରଗଛ କୋରଡ଼ ଯାଏ— ପାହାଡ଼ ପର୍ବତର ଖୋଳରୁ ଆରମ୍ଭ କରି ନଗ୍ର କୋଣର ଗମ୍ଭିରାଘର ଠଣାଯାଏ, ପୁଣି ପ୍ରଧାନ ଅପ୍ରଧାନ ରାସ୍ତାକଡ଼ରୁ ଆରମ୍ଭକରି ପ୍ରସିଦ୍ଧ ଅପ୍ରସିଦ୍ଧ ମନ୍ଦିର ଅବା ତାର ପାର୍ଶ୍ଵ କାନ୍ଥ ଯାଏ; କେଉଁଠି କେତେ ରଙ୍ଗ ଢ଼ଙ୍ଗରେ—କେସମ କେସମ ନାଁ ନେଇ ଦେବୀମାନେ ନ ବସିଛନ୍ତି ! କୋଟିଲିମୂଳୀରୁ କାକଟାଇ, ଭୁଆସୁଣିରୁ ଭୁବନେଶ୍ୱରୀ, ବିମଳାଇରୁ ବିରଜା, ଅନ୍ଦିତରୁ ଅପରାଜିତା, ପାର୍ବତୀରୁ ଭବାନୀ—ଏମିତି କେତେଯେ କେତେ ତାଙ୍କର ନା, ପୁଣି ବେଦ, ପୁରାଣ, ଆଖ୍ୟାୟିକା ରୁ ଲୋକ କଥା ଏବଂ ଓଷା ବ୍ରତର ଗୀତ ଓ ଜଣାଣ ଭଜନ ମାନଙ୍କରେ କେତେଯେ କେତେ ତାଙ୍କର ମହିମା ଓ ଗୁଣ ଗରିମାର ବଖାଣ, ତାକୁ ନୋଟ୍ କରିବାକୁ ବସିଲେ ହୋଲ୍‌ନାଇଟ୍ ଷ୍ଟଡି କରି କରି ଅପେଣ୍ଡି ହୋଇଯିବ କି କଲିକ୍ ବାହାରି ପଡ଼ିବ ! ଏଥିପାଇଁ ପୁଣି କେତେ ବାଲ୍ଟି ଲୁହ ଓ କେତେ ଟୋକେଇ ବହି

ମିଶନରୀଙ୍କ ଦରକାର ହେବ ତାର ଠିକ୍ ଠିକଣା ନାହିଁ । ଏଇ-ଖାଣ୍ଟି ଅସଲି ଦେବୀମାନଙ୍କ ଛତ୍ରୀ, ଆସରଘର, କଚେରୀ, ଆସେମ୍ବଲି ବା ବିଧାନସଭା, ପାର୍ଲିଆମେଣ୍ଟ ଆଦିରେ ଯେଉଁ ଦେବୀ ସଂଜ୍ଞା ଧାରଣୀମାନେ ଅଛନ୍ତି, ସେମାନଙ୍କୁ ପାଣିପାଠ ବୋଲି ଧରିନେଲେ ମଧ୍ୟ, ହିସାବ ସହଜେ ଖତମ ହେଉନି । ତେଣୁ ଏତେ ଅତୁଆ ଭିତରକୁ ନଯାଇ ଆମେ ସବୁଦେବୀରେ ସେ ସାର ନିଦ୍ରାଦେବୀ; ତାଙ୍କର ବିଷୟରେ ବର୍ଣ୍ଣନା କରିବା ।

ଚଣ୍ଡୀରେ କୁହାଗଲା — "ଯା ଦେବୀ ସର୍ବଭୂତେଷୁ ନିଦ୍ରାରୂପେଣ ସଂସ୍ଥିତା, ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ" "ଯେଉଁ ଦେବୀ ନିଦ୍ରାରୂପରେ ସକଳ ଘଟେ—ବିରାଜି ଥାଆନ୍ତି, ସେଇ ଦେବୀଙ୍କ ନମସ୍କାର, ନମସ୍କାର, ନମସ୍କାର" —କୋଟି କୋଟି ନମସ୍କାର । ତେବେ ଯେଉଁ ଦେବୀ ଏସନ ସ୍ଥିତିରେ ଥାନ୍ତି, ସେଇ ମୂଳ ଦେବୀଙ୍କ ଖୋଜି ନପାଇ ଆମେ ଖୋଦ ନିଦ୍ରାଦେବୀଙ୍କ ଚରଣତଳେ ସଲାମ ପରେ ସଲାମ ଠୁକେଇ ପକାଉଛୁ । ଆମେ କ'ଣ, ଯେଉଁମାନେ ଆମ ଉପରକୁ ମୁଠାଣିଏ, ସେମାନେ ବି ଏହାଙ୍କୁ ସଲାମ୍ ବଜେଇ ବଜେଇ ନାକେଦମ୍ ହୋଇଛନ୍ତି । ଆମେ କିବା ଛାର, କେଉଁ ଗାଈର ଗୋବର — କୋଉ ମଣିଷରେ ଗଣା ? ବୋଇଲି-"ଠେଙ୍ଗା କହିଲି ଠେକାକୁ ତୁ କୋଉ ଗଣନାରେ ଲେଖାକୁ" ! !

ଇଂରାଜୀ ସାହିତ୍ୟର ବଡ଼ଲୋକ ମାନେ ଜାଣନ୍ତି—କଲେରିଜ୍ ଜଣେ ଅଫିମିଆ କହିଥିଲେ । ଆମ ଗାଁ ଗଣ୍ଡାରେ ଏକୁ ସେବନ କରୁଥିବା ଲୋକ ବି ଉଣା ନାହାନ୍ତି । ସେଇମାନେ କହନ୍ତି —

"ଅ ରେ ଅକଲବଢୀ, ଫି ରେ ଫିକର ବାଜୀ; ମ ରେ ମସ୍ଧା, ଅଫିମ (ଏହାର କୋଡ଼ ନାମ କଳା କୃଷ୍ଣ) ସେବା ନ କଲେ ଏମାନ ଆସ୍ୱାଦ ହୁଏ ନାହିଁ। କିନ୍ତୁ ନେତାଏ ଦେଶବାସୀଙ୍କୁ ଲଞ୍ଚ, ମିଛ, ଦୁର୍ନୀତିରେ ବଳୁଚେଇ ବଳୁଚେଇ ସେବା କରି ଯାଉଛନ୍ତି ଯେ, ସେମାନଙ୍କ କଷ୍ଟର ବେଳକୁ କାହା କଥା ଲେଉଟେ ନି; କିନ୍ତୁ ଏହି କଳାକୃଷ୍ଣର ସେବକ ମାନଙ୍କ ପଇଁ ସମସ୍ତଙ୍କର ଘୃଣା, ଗଞ୍ଜେଇର କେଉଁଠି କେଜାଣି ଝୁଣ୍ଢହୋଇ ରକ୍ତ ଆଖି ଆଉ କହିବାକେ ପିଡ଼କ ଦେଉଛନ୍ତି। ହେଲେ ଅଫିମର କରାମତି କ'ଣ କହିବ। ଏହି ପଦାର୍ଥରୁ ଟିକିଏ ଲେଖା ସେବା ନ କରିଥିଲେ ଗୋପାଳ ଚନ୍ଦ୍ରଙ୍କ ଭାଷା କୋଷ ସାରପାଇ ନଥାନ୍ତେ। ଏହା ଆମେ ଗଳ୍ପରୁ ଚୋରାଇ ଆଣି କହୁନାହୁଁ; ସେଇ କଥା ମାନଛନ୍ତି। ଅଜ ମଧ୍ୟ କେତେ କେତେ ଲୋକ ଇଆର ପାଇଁ ବହୁକଥା ଖାଉ ଯାଉଛନ୍ତି। ଅବଶ୍ୟ କେତେକ ଅଫିମ ନଖାଇ ଥିଲେ ବଞ୍ଚିକରି ହୋଇ ପ୍ରାଣ ଆଶା କି ନାହିଁ ସେକଥା କହିବାକୁ ଆମେ ତାଙ୍କ ଜୀବନ ଦେଖିନାହୁଁ। ତାଙ୍କ ସାଥି ଓ୍ୱାର୍ଡସ୍‌ୱର୍ଥଙ୍କୁ ପଚାରିଲେ ହୋଇପାରେ। ଆଜି ମଧ୍ୟ ଅଫିମର କରାମତି ରେ ଯିଏ ସ୍ୱପ୍ନନିଦ୍ରା ଯାଉଥିଲେ କି ନାହିଁ, ସେ ସମ୍ବାଦ ଦେବାକୁ ସୁଦ୍ଧା ଆମେ ଖାଉନି ହେଉନାହୁଁ। କିନ୍ତୁ ଏ କଥା କହିବାକୁ ଆମେ ଛାଡ଼ିବୁ ନାହିଁ ଯେ, ନିଦ୍ରାର ମହିମା ଯିଏ ବୁଝିଥିଲେ। ସେଥିପାଇଁ ତାଙ୍କ କଳ୍ପନାର ସନ୍ତାନ ଆନସିଏଣ୍ଟ ମାରିନର, ଅନିଦ୍ରାରେ ସାଉଁଟି ପାଉଁଟି କାଉଳା ବାଉଳା ହୋଇ ଜନ୍ମିତ୍ର ଗାବନର ଜ୍ୱାଳାଭିତରୁ ମୁକ୍ତ ଆସି ପଦୁଟିଏ ଗାଉଛି—

"Oh sleep! It is a gentle thing
Beloved from pole to pole,

To Mary Queen the praise be Given
She sent the Gentle sleep from Haven
That slid into my soul."

"ଆହା ନିଦ,
କେ ବଖାଣି ପାରେ ସେ ଚରିତ
କେ-ତ ଧୀର ସ୍ବର ଆହା ସୁମଧୁର
ନଦେଲେ କ ଏମେରୁରୁ ସେମେରୁ ପର୍ଯ୍ୟନ୍ତ
ଗୁଣ ତୋର ପ୍ରସର ଥାଆନ୍ତା ।
ଧନ୍ୟ ଦେବୀ ମେରୀ ତୁମେ
ଧନ୍ୟ ତୁମ ନାମ
ନିଦ୍ରା ତୁମ ଅପୂର୍ବ ସୃଜନ
ସ୍ୱର୍ଗ ଅବତର ଯାହା
ପ୍ରାଣେ ମୋର ସଞ୍ଚରି ଆସିଲା !"

'ଭବଗ୍ରାହୀ ଲେଖୀର' ବ ଏମିତ ନିଦ୍ରାଦେବୀଙ୍କ ଉଳ 'ପସୁର ବଢ଼ାଇ ଦେଇ' ନଥିଲେ । ଆମ ନିଦ୍ରାଦେବୀଙ୍କ ଭବଗ୍ରାହୀପଣକୁ ଯିଏ ଜମାରୁ ସହି ନୁହନ୍ତି । ଖାଲି ସୀତାଙ୍କୁ ବାହା ହେବାଲାଗି ଉଛନ୍ନ ହେଉଥିଲେ ବୋଲି ବଡ଼ୁ ଥରେ ଓଠଉପରେ ପାଦଟିକ ଧୀରେକିନ ବଢ଼େଇଦେଲେ । କ'ଣ ନା ସିଏ ହେଲ-ଭବଗ୍ରାହୀ । ଇଏ "ଜୁ ଦାଲୁ ଓକିଲ" ଭଲିଆ କଥା; ନିଦ୍ରାଦେବୀଙ୍କର ଯୋଗ୍ଯ ଭକ୍ତ, ତାଙ୍କୁ ଇଏ କୋଉଠୁ ପାଇବେ ? – ସେଥିପାଇଁ ଜାଣିଲା ବାଲଏ, ଏଙ୍କ ଉପରେ କାଣ୍ଡେ ଲେଖାଏ ଲେଖି ଯାଇଛନ୍ତି ।

ସେକ୍ସପିଅରଙ୍କ ମାକ୍ବେଥବଦୁର୍ଦ୍ଦଶା କଏ ବୁଝେ ! ବଚରା ଦୁଶ୍ଚିନ୍ତାରେ ଶୋଇ ନପାରି କେତେ ବକକଡ଼ାଇ ଢଳୁଛି—

"Methought I heard a voice cry sleep no more !
Macbeth does murder sleep,—the innocent sleep,
Sleep that knits up the ravell'd sleave of care,
The death of each day's life, sore labour's bath,
Balm of hurt mind, great nature's second course,
Chief nourisher in life's feast."

ମନେହେଲା ମତେ କିଏ ଦୂରରୁ ପୁକାରେ
'ଶୁଅନାହିଁ ଶୁଅନାହିଁ ଆଉ
କାରଣ ମାକବେଥ ନିଦକୁ ହତ୍ୟା କରୁଛି !'
ଆହା କେତେ ନିଷ୍ପାପ ସରଳ ନିଦ
ଯେତେ ଯନ୍ତ୍ରଣା ଦାଉରୁ ସେ ଆମକୁ ଉଦ୍ଧାର କରେ !
ଦୈନନ୍ଦିନ ଜୀବନର କେତେ କ୍ଲାନ୍ତି
କାନ୍ତିଭରେ ଭାର ପୋଛି ଦେଉଛି !
କେତେ ଶାନ୍ତି ଆଣେ ଆତୁର ମନରେ ସେ
ମଲମ ଲଗାଉଛି !
ଅଧିକେ ତାରିବା ପାଇଁ ପ୍ରକୃତିର ଦ୍ୱିତୀୟ ରଚନା
ଜୀବନର ଭୋଜିଭାତ ମିଠା ଲାଗେ ତା ପାଇଁ ସିନା !

ନିଦ୍ରାଦେବୀଙ୍କ କରୁଣାରୁ ଜାଣିବୁଏ ଜମି ଆସିଲେ ବେଦନା ସେତେ ଖୁମି ପଡ଼ାଏ, ସହସ୍ର ଚେଷ୍ଟା ଶାନ୍ତି ଏକାଠିରକେ ଏମିତ ଖୁମା, ଖୁମି ପାରେ ନାହିଁ। କିନ୍ତୁ ସବୁଠି ଓ ସବୁବେଳେ ସେ ନିଦ୍ରାଦେବୀଙ୍କୁ ଆବାହନ କରଯାଏ ତା'ନୁହେଁ।

କେଉଁଠି କେଉଁଠି ପରୀକ୍ଷା ପୂର୍ବଦିନ ରାତିରେ ଚା', କଫି ଟେଣ୍ଡି, ସିଗାରେଟ ଇତ୍ୟାଦି ଭୋଜ ଓ ପୂଜି ନିଦ୍ରାଦେବୀଙ୍କୁ

'ସ୍ୱସ୍ଥାନଂ ଗଚ୍ଛ" ଶୁଣାଏ ତ", କେଉଁ ଅନଭ୍ୱା ଯୋଗୀ ନଡବଟିକା ଗିଳି 'ଅଧୋଗଚ୍ଛ" କରାଏ। କିନ୍ତୁ ବାଲ୍ମିକୀମୁନିଙ୍କ କୁମ୍ଭକର୍ଣ୍ଣ ପରି ସୃଷ୍ଟି କିଏ ? ସେଇ କୁମ୍ଭକର୍ଣ୍ଣ ଜଣେ ଗୁରୁଦେବ ଲୋକ। ତାଙ୍କ ସାଥିରେ ହାତ ମିଳାଇବାକୁ ମନ ଧାଁଏ। ପାଟିରୁ ବାହାରି ଆସେ "ବାଃ ଗୁରୁଦେବ କୁମ୍ଭକର୍ଣ୍ଣ, କି ନିଧୋକା ନିଦ ତମେ ଶୋଇ ପାରୁଥିଲ ! କିନ୍ତୁ ହାୟ ତା' ଉପରେ ଖଣ୍ଡେ ଥେସିସ୍ ଯାହା ଲେଖା ନଗଲା। ସେଇ ଦୋଷରୁ ତୁମେ ବାଲ୍ମିକୀ ମୁନିଙ୍କ ଟେସ୍ଟବୋର୍ଡ଼ରେ ଟେନ୍ଥିଏ ଭଳି ରହିଗଲ ପରା। ତଥାପି ତୁମକୁ ଆମେ ସମ୍ମାନ-ସୂଚକ ଡକ୍ଟରେଟ ଦେବୁ। କାରଣ ଜାଣିନା, ଆମ ଦେଶର ଶାସନକଳ ତୁମଭଳି ରାଜଭ୍ରାତାଙ୍କଠାରୁ ଏଇ ଶୋଇପଡ଼ିବାର କଳାଟି ବେଶ୍ ଆୟତ୍ତ କରିନେଇ ସଂପ୍ରଦର୍ଶନ କରୁଛନ୍ତି।"...କିନ୍ତୁ ଏ ବିଷୟରେ ବେଶୀ ଗୁଡ଼ାଏ ବକ୍‌ବାଜି କରିବା ମନା।

କୁହାଯାଏ, ନିଦ୍ରାଦେବୀ କଷ୍ଟ ବୁଝନ୍ତିନି, କବି ସାରଳାଦାସ ସେଥିପାଇଁ ଗାଇଛନ୍ତି—

"କ୍ଷୁଧା ନଜାଣଇ ମାଗୋ ଅଲଣା କି ଲୁଣି
ନିଦ୍ରା ନଜାଣଇ ମାଗୋ ଘର କି ମଶାଣି
ମୂର୍ଖ ନଜାଣଇ ମାଗୋ ଶାସ୍ତ୍ର ବାଟ କଥା
ପାଷଣ୍ଡ ଜାଣିବ କାହୁଁ ପଣ୍ଡିତ ବ୍ୟବସ୍ଥା।

ନିଦ୍ରାଦେବୀ ଯେ ଖାଲି ଘର କି ମଶାଣି ଜାଣିପାରନ୍ତି ନାହିଁ ସେତିକି ନୁହେଁ। ଗୁରୁଙ୍କ ପୃଷ୍ଠି ପାଇଲ୍ କି ତମାଦି କରିଦେଲ —ଭଳି ପାଇଲ, ସେ କଥା ବି ସେ ଜାଣି ପାରନ୍ତିନାହିଁ। ଅନେକ ସମୟରେ ଉଭୟଙ୍କି ଉପରେ କର୍ତ୍ତାଙ୍କୁ ଧୀରକରି ଶୁଆଇ-

ଦିଅନ୍ତି । କି ଅପାର କରୁଣା ତାଙ୍କର ! ଅଜାଣ ପିଲାଙ୍କୁ ଶୁଆଇବା ପାଇଁ ମା'ମାନେ ତାଙ୍କ ସହିତ ବନ୍ଧୁବାନ୍ଧବ ସମ୍ପର୍କ ଯୋଡ଼ି ବୋଲୁଥାନ୍ତି—

ନିଦମାଉସି ବୁଜିଦେନା କୁନା ଆଖି ଯୋଡ଼ିକ
ଯାଉ ହସରେ ଝରେ ମୁକୁତା ଆଜ କାନ୍ଦରେ ମାଣିକ ।

କିନ୍ତୁ ନିଦ ମାଉସି ସେତିକି ସହଜରେ ଆସନ୍ତିନି । ମାଷ୍ଟର ମାନଙ୍କ ଦସ୍ତରକୁ 'ଷ୍ଟାଗ୍ରାଫ୍ ରଦ୍ଦିଗାର'ଙ୍କ ପତ୍ର ପଠାଇ ଦିଅନ୍ତି ।

ନିଦ୍ରାଦେବୀ ଯେତେବେଳେ ମଣିଷର ଶରୀର ଭିତରକୁ ଅବତରଣ କରି ଆସନ୍ତି, ସେ ଆଉ ଦେବୀଙ୍କ ପରି ସେ କୌଣସି ସ୍ଥାନ ବାଛି ନିଅନ୍ତି ନାହିଁ । ମଣିଷର ପଙ୍କେଟକୁ ଉଷ୍ମ କରୁଥିବା ଲକ୍ଷ୍ମୀ ଠାକୁରାଣୀ ବସନ୍ତି କାନ୍ଧରେ, ଅଜଲ ଦାପ୍ତିମା ମାତା ବୀଣାବଜାପ୍ତିମା ସରସ୍ୱତୀ ପହଞ୍ଚନ୍ତି କଣ୍ଠରେ, କିନ୍ତୁ ନିଦ୍ରାଦେବୀ ଏ ସବୁକୁ ଛାଡ଼ି ବାଛିନେଲେ ଗୋଟିଏ ଅଚଳ ଥାନ । ପିଲା ମାନଙ୍କର ନାଁ ଭିଆରେ ସେଇ ସ୍ଥାନଟିର ଗରିମା ଜଳଜଳ ହୋଇ ଦିଶେ । ସିଏ ପୁଣି କେମନ୍ତ ?

ମନେ ପକାନ୍ତୁ, ବଗୁଲିଆ ସାନ ପୁଅଟି ଆପଣଙ୍କର ଧାଇଁ ଆସି ଆମମାନରେ ନଅ କଣ ଚକାପକାଇ ବସିପଡ଼ି, କୁଆଁଡ଼ୁ ମାରି ଆଣିଥିବା ପାନ ଖଣ୍ଡେ ଚୋବାଉଥିବ ଆଉ ଝୁଲି ଝୁଲି ପଚାରୁଥିବ—"କହିଲ ବାପା କହିଲ ଦେଖି—ଏଇଠି ଅଛି, ଗାଁ ଘରପାଖ ବୁଢ଼ୀ ଆସିଛି ।"···ଆପଣେ ତୁଏତ କହି ନପାରିଲେ

ମାଗଦେବ ଚାଲହାଏ-- "ହଁ। ହାରିଗଲି'। ଆଉ ଗୋଟାଏ
କହ---

'ଫାଟ୍ ଚ' ଫାଟ କନମ ଫାଟ୍,
ଫାଟ୍ ଦୁଇପାଖେ ବାଳ
ଶୋଇଥିଲେ ଫାଟ୍ ବୁଜି ହୋଇଥାଏ
ବସିଥିଲେ ଦୁଇ ଫାଳ।"

ଆପଣ ହେଜ୍ ହେଜ୍ ସିଏ ଠିଆ ହୋଇ ଟିକଏ ଦଇଁପଡ ମୁହଁ ହଲାଇ କହିବେବ---"ଏତିକ ଜାଣୁପାରୁନ-- ବ'ଟି ଯାକର ନାଁ ହେଲା ଆଖି।" ତା'ପରେ ସେ ଧାଇଁ ପଳାଇଯିବ, ଆପଣ ଭାବୁଥିବେ---କେମିତି ହେଲା! ତା'ପରେ ହସିଦେଇ କହିବେ-ଆରେ ହେ...! କିନ୍ତୁ ଏଇ ଆଖିଟି ଉପରକୁ ନିଦ୍ରାଦେବୀ ଓହ୍ଲାଇ ଆସିଲା ବେଳେ ଆପଣ କ ଆଗମ ଅନୁଭବ କରୁଥା'ନ୍ତି! ନିଦ୍ରାଦେବୀଙ୍କର ସିଂହାସନାରୋହଣ ଓ ପରି-ତ୍ୟାଗବେଳେ କ ସୁନ୍ଦର ଭାବରେ ପଡ଼ା ଦୁଇଟିରେ ତାହା ସୂଚିତ ହୁଏ। ପଦ୍ମରେ କ ସୁମର ଗୁଞ୍ଜନ! ପିଲାଙ୍କୁ ଏଇ ନିଦ୍ରାଦେବୀ ଅତି ସାନ ଅଂଚ ବଳସ୍ତୁ ପର ଜଣାପିଡାରୁ, ସେମାନେ କହନ୍ତି- "ଏତିକ ଟିକିଏ ଲଟି, ସବୁକୁ ନିଏ ପିଟି" ସତରେ ନିଦ୍ରାଦେବୀ ପଡ଼ିଆଗଲେ ସବୁକଥା ଅପସରି ଯାଏ!

ସବୁ ଚିନ୍ତାରୁ ନିଜକୁ ବଞ୍ଚାଇବାପାଇଁ ବଡ଼ସାହା ହେଲେ ନିଦ୍ରାଦେବୀ। ପ୍ରାଣର ବେଦନାକୁ ଉପସମ ପାଇଁ ସେ ବେଦାନାଗ୍ରହରସ ଓ ଜୀବନର ଛତିକୁ ଶୁଖାଇବା ପାଇଁ

ମଲଲମ ପର ଅସିଥାନ୍ତି । ସେଇ ନିଦ୍ରାଦେବୀଙ୍କୁ ମୋର ହରଦଣ୍ଡ ପ୍ରାର୍ଥନା—

"ହେ ନିଦ୍ରାଦେବୀ, ତୁଭ୍ୟେ ନମଃ । ତୋର କୋଳରୁ ମୋର ଜନ୍ମ—ତୋର କୋଳରେ ମୋର ବଳୟ । ତୁହିଁ ମୋର ଜନନୀ ଓ ଜାୟା, ତୁଇ ମୋର ସର୍ବ - ତୋରକୋଳ ହିଁ ମୋର ଭରସା ଓ ସେଇଠାରେ ହିଁ ମୋର ଶାନ୍ତି ।

ମଶା କାମୁଡ଼ନ୍ତୁ, ଡାଉଁଶ ଦଂଶୁ, ଘୁରଣ୍ଡେଇ ହରବାଣ୍ଣ କରୁ, ପେଟ ଭିତରେ ସାତବଣ୍ଡ ପଦେଇ ସାନ୍ତର ଡ଼ଆଁ ମାରନ୍ତୁ, ହାଣ୍ଡିରେ-ମାଙ୍କଡ଼ଶା ବସାକରୁ, ଲକ୍ଷ୍ମୀ ପଳେଇ ଓ ବାକ୍ସ ଘୁଞ୍ଚି ହାଉଆଣି କ ମାରୁଅଛି ଢେଙ୍କୁ ଯା'ନ୍ତୁ । ଚୁଲିରେ ବଢଲଇ ଶୋଇ । ଯେତ୍କ ତା' ହୋଇ ଯାଉ ପଛକେ, ତୋ କୋଳରେ ମତେ ଟିକଏ ଆଶ୍ରା ଦିଅ ! ଏମନ୍ତ ସୁଦୟା ମୋତେ କର ନିଦ୍ରାଦେବୀ ।

ତୁ ଦୟା ନକଲେ ଦୁଗ୍ଧ ଫେନନିଭ ଶଯ୍ୟାରେ ବ--- ଉଜାଗର ଲାଗେ—ପୁଣି ତୋ କୃପା କଣିକାରୁ ଟିକଏ ଛୁଆଁ ହୋଇ ଗଲେ ଘୁରି ପୋକ ଭରା ଖଟିଆରେ ବି ଘୁଙ୍ଗୁଡ଼ିର ଡିଣ୍ଡିମ ବଜାଇ ଶୋଇହୁଏ । ଭଗବାନ ତୋ ପ୍ରସାଦ ପାଇ ସହସ୍ର ଫଣା ସାପ ଉପରେ ଶୁଅନ୍ତି, ତା' ତୁଳନାରେ ଘୁରିପୋକ କଦାକନ୍ତୁ ! ମା ନିଦ୍ରାଦେବି, ତୁ ଯେଉଁ ଘୁଙ୍ଗୁଡ଼ି ବଜାଉ ହୃଷିକେଶଙ୍କ ପାଞ୍ଚଜନ୍ୟ ବି ସେମିତି ବାଜେ ନାହିଁ । 'ଜୟତୁ ନିଦ୍ରାଦେବି ଜୟତୁ ମା ।'

ମା ତୁ ବିପଦ ନାଶିନୀ, ତୁ ବିପଦବେଳେ ସରକାରଙ୍କୁ ଦୟାକରୁ ବୋଲି ଖବର କାଗଜ ବାଲା ଓ ସରକାର ବିରୋଧି ଲୋକେ କହନ୍ତି । ...... ତୁ କିନ୍ତୁ ମୋତେ ଦୟାକରୁଥା ମା ।"

ସରକାର ଯେ ନିରାକାର । ନେସ ଯଦ୍ଧ ସଭରେ ନିଦ୍ରାପ୍ରିୟ ହୋଇଥାନ୍ତି, ତେବେ ନିଦ୍ରାଦେବୀଙ୍କୁ ଭଜନ ଓ ସ୍ମରଣ କରିବା ଉଚିତ—ଯେଉଁରିକି ନିଦ୍ରାଦେବୀ ସରକାରଙ୍କ ସହିତ, ସରକାରଙ୍କ ସମାଲୋଚକ ମାନଙ୍କୁ ମଧ୍ୟ ନିଜ କୋଳକୁ ଟାଣି ନିଅନ୍ତି ! ଅବୈତନିକ ଗୃହକର୍ତ୍ତ୍ରୀ ପାଇଁ ସମ୍ମାନସୂଚକ ପାଉଣା ଦେବାବାଲା —"ହେ ସରକାର ଏଇ ପରାମର୍ଶ ପାଇଁ ମତେ କିଛି ନଦେଲେ ବି ଏତିକି ମାଗଣା; ଖାଲି ତୁମରି ପାଇଁ ! ......ଜୟତୁ ନିଦ୍ରାଦେବୀ ଜୟତୁ ମା........."

